# ଉତ୍କଳ ପ୍ରସଙ୍ଗ

**The Utkal Prasanga**

**February-March- 2014**

୭୦ ଭାଗ ୭ମ-୮ମ ସଂଖ୍ୟା ମାଘ-ଚୈତ୍ର ଫେବୃଆରୀ-ମାର୍ଚ୍ଚ -୨୦୧୪

**ପ୍ରଦୀପ କୁମାର ଜେନା,** ଭା.ପ୍ର.ସେ.
ପ୍ରମୁଖ ଶାସନ ସଚିବ

**ପ୍ରମୋଦ କୁମାର ଦାସ,** ଓ.ପ୍ର.ସେ.
ନିର୍ଦ୍ଦେଶକ

**ଡକ୍ଟର ହୁସେନ ରବିଗାନ୍ଧୀ**
ସମ୍ପାଦକ

ପ୍ରଚ୍ଛଦପଟ ଓ ଲେ-ଆଉଟ୍ ଡିଜାଇନିଂ
**ମାନସ ନାୟକ**

ଫଟୋ :
**ରାଜୁ ସିଂ ଓ ମନୋରଂଜନ ମହାନ୍ତି**

ସମ୍ପାଦନା ସହଯୋଗୀ
**ଗୋବିନ୍ଦଚନ୍ଦ୍ର ମଲ୍ଲିକ**
**ସଚିଦାନନ୍ଦ ବାରିକ**

କମ୍ପ୍ୟୁଟର ସେଟିଂ ଓ ଡିଜାଇନିଂ
**ହେମନ୍ତ କୁମାର ସାହୁ**
**ସୁମିତ୍ରା କର**

**ପ୍ରତିଖଣ୍ଡ : ଟ. ୫.୦୦**



ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ-୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଲୋକ ସମ୍ପର୍କ ଭବନ, ଭୁବନେଶ୍ୱର-୭୫୧୦୦୧

ଇ-ମେଲ୍ : iprsec@rediffmail.com, iprsec.or@nic.in, ୱେବ୍‌ସାଇଟ୍ : www.orissagov.nic.in
ଫୋନ୍ : ୦୬୭୪-୨୫୩୦୨୧୧

ଫେବୃଆରୀ-ମାର୍ଚ୍ଚ ୨୦୧୪







**ସମ୍ପାଦକୀୟ**

# ଗଣତନ୍ତ୍ରର ପ୍ରଥମ ପାହାଚ: ପଞ୍ଚାୟତିରାଜ ବ୍ୟବସ୍ଥା

ପଞ୍ଚାୟତିରାଜ ବ୍ୟବସ୍ଥାଟି ସ୍ୱାଧୀନ ଭାରତର ଗଣତାନ୍ତ୍ରିକ ସୌଧର ପ୍ରଥମ ପାହାଚ କହିଲେ ସତ୍ୟର ଅପଳାପ ହେବ ନାହିଁ । ପ୍ରାଚୀନ ଭାରତର ଗ୍ରାମମାନଙ୍କରେ ପଞ୍ଚାୟତ ବ୍ୟବସ୍ଥା ପ୍ରବର୍ତ୍ତିତ ହୋଇଥିଲା । ବୌଦ୍ଧ ଯୁଗ, ମୌର୍ଯ୍ୟ ଓ ଗୁପ୍ତ ଶାସନ କାଳରେ ଭାରତବର୍ଷର ଗ୍ରାମାଞ୍ଚଳର ବହୁବିଧ ପ୍ରଶାସନିକ/ରାଜସ୍ୱ/ନ୍ୟାୟିକ/ଆଇନ ଶୃଙ୍ଖଳା ଇତ୍ୟାଦି ବିଧାନଗୁଡ଼ିକ ପଞ୍ଚାୟତ ମାଧ୍ୟମରେ ଚାଲୁଥିଲା ବୋଲି ଇତିହାସରୁ ସୂଚନା ମିଳେ । ଏପରିକି ତୁର୍କୀ-ଆଫ୍‌ଗାନ୍-ମୋଗଲ ଯୁଗରେ ବି ଗ୍ରାମାଞ୍ଚଳର ଏହି ପଞ୍ଚାୟତିରାଜ ପୂର୍ବ ପ୍ରଚଳିତ ରହିଥିଲା ଏବଂ ମୁସ୍‌ଲିମ୍ ଶାସକମାନେ ଗ୍ରାମାଞ୍ଚଳର ଶତାବ୍ଦୀ ଶତାବ୍ଦୀ ହେଲା ଚଳି ଆସୁଥିବା ଏହି ବ୍ୟବସ୍ଥାରେ ହସ୍ତକ୍ଷେପ କରି ନଥିଲେ ।

ପଞ୍ଚାୟତ ବ୍ୟବସ୍ଥା ପ୍ରାଚୀନ ଓ ମଧ୍ୟଯୁଗୀୟ ସ୍ୱେଚ୍ଛାଚାରୀ ରାଜତନ୍ତ୍ରରେ ବି ତିଷ୍ଠି ରହିଥିଲା । କାରଣ ଏହା ଶାସନ ବ୍ୟବସ୍ଥାର ବିକେନ୍ଦ୍ରୀକରଣ ଥିଲା ଓ ଗ୍ରାମାଞ୍ଚଳର ଜନସାଧାରଣଙ୍କ ପାଇଁ ଏହା ଏକମାତ୍ର ବିକଳ୍ପ-ବିହୀନ ବ୍ୟବସ୍ଥା ଥିଲା । କିନ୍ତୁ ଇଂରେଜମାନଙ୍କ ସମୟରେ ଶାସନ ବ୍ୟବସ୍ଥାର ବିକେନ୍ଦ୍ରୀକରଣ ଧୀରେ ଧୀରେ ଲୋପ ପାଇ କ୍ରମଶଃ ଏକ କେନ୍ଦ୍ରୀକରଣ ଶାସନ ବ୍ୟବସ୍ଥାର ସୂତ୍ରପାତ ହେଲା । ସାମ୍ରାଜ୍ୟବାଦୀମାନଙ୍କର ଜନସାଧାରଣଙ୍କୁ ଶୋଷଣ ପାଇଁ ଶାସନର କେନ୍ଦ୍ରୀକରଣ ଏକାନ୍ତ ଆବଶ୍ୟକ ଥିଲା । ବିକେନ୍ଦ୍ରୀକରଣ ଦ୍ୱାରା ସାମ୍ରାଜ୍ୟବାଦୀ ଶୋଷଣ ଜନସାଧାରଣଙ୍କ ଦ୍ୱାରା ବାଧାପ୍ରାପ୍ତ ହେବାର ସମ୍ଭାବନା ଥିବାରୁ ଶହ ଶହ ବର୍ଷ ଧରି ବିକେନ୍ଦ୍ରୀକୃତ ବ୍ୟବସ୍ଥାକୁ ଇଂରେଜମାନେ ହଟାଇ ଦେଇଥିଲେ ।

ଆମ ଦେଶର ସ୍ୱାଧୀନତା ଆନ୍ଦୋଳନ ସମୟରେ ଜାତିର ଜନକ ମହାତ୍ମା ଗାନ୍ଧୀ ଗ୍ରାମ ସ୍ୱରାଜ ଉପରେ ଗୁରୁତ୍ୱାରୋପ କରିଥିଲେ । ଏହି ଗ୍ରାମ ସ୍ୱରାଜ୍ୟର ପରିକଳ୍ପନାରୁ ସ୍ୱାଧୀନତା ପରେ ପଞ୍ଚାୟତିରାଜ ବ୍ୟବସ୍ଥାର ଉଦ୍ଭବ ଘଟିଥିଲା । ଆଜି ପଞ୍ଚାୟତିରାଜ ବ୍ୟବସ୍ଥା ଭାରତୀୟ ଗଣତନ୍ତ୍ରକୁ ସୁଦୃଢ଼ କରିପାରିଛି ଏବଂ ତୃଣମୂଳ ସ୍ତରରୁ ଏହା ଲୋକଙ୍କ ମୌଳିକ ଅଭାବ ଅସୁବିଧାଗୁଡ଼ିକୁ ଦୃଷ୍ଟିରେ ରଖି ତା'ର ନିରାକରଣ ପାଇଁ ଉପାୟ ଚିନ୍ତା କରିପାରୁଛି ।

ଓଡ଼ିଶାରେ ପଞ୍ଚାୟତିରାଜକୁ ସଶକ୍ତ କରିବାରେ ପ୍ରବାଦ ପୁରୁଷ ସ୍ୱର୍ଗତ ବିଜୁ ପଟ୍ଟନାୟକଙ୍କ ମୁଖ୍ୟମନ୍ତ୍ରିତ୍ୱ ସମୟରେ ବେଶ୍ କିଛି ଆଖିଦୃଶିଆ କାର୍ଯ୍ୟ ହୋଇପାରିଥିଲା । ମହିଳାମାନଙ୍କ ପାଇଁ ସ୍ଥାନ ସଂରକ୍ଷଣର ବ୍ୟବସ୍ଥା ସମ୍ବିଧାନ ସଂଶୋଧନ କରି ସାରା ଦେଶରେ ପ୍ରଚଳନ କରାଯିବା ପୂର୍ବରୁ ବିଜୁବାବୁ ତାହା ଓଡ଼ିଶାରେ ଆଇନ ତିଆରି କରି ଆରମ୍ଭ କରି ଦେଇଥିଲେ । ସେହିପରି ୬୦ ଦଶକରେ ବିଜୁବାବୁ ପ୍ରଥମ ମୁଖ୍ୟମନ୍ତ୍ରୀ ହୋଇଥିବା ସମୟରେ ଓଡ଼ିଶାରେ ତ୍ରିସ୍ତରୀୟ ପଞ୍ଚାୟତିରାଜ ବ୍ୟବସ୍ଥା ପ୍ରବର୍ତ୍ତନ କରିଥିଲେ । କିନ୍ତୁ ତାଙ୍କ ପରେ ରାଜା ରାଜୁଡ଼ା ଓ ସାମନ୍ତବାଦୀମାନେ ଏ ରାଜ୍ୟର ସରକାରର ନେତୃତ୍ୱ ନେଇ ପଞ୍ଚାୟତିରାଜ ବ୍ୟବସ୍ଥାକୁ ଦୁର୍ବଳ କରିଦେଲେ । ତା'ପରବର୍ତ୍ତୀ ସରକାରମାନେ ମଧ୍ୟ ପଞ୍ଚାୟତିରାଜ ବ୍ୟବସ୍ଥାକୁ ସୁଧାରିବାକୁ ବିଶେଷ ଉଦ୍ୟମ କରି ନଥିଲେ । ଏପରିକି ବର୍ଷ ବର୍ଷ ଧରି ପଞ୍ଚାୟତ ନିର୍ବାଚନ ମଧ୍ୟ ହେବା ସମ୍ଭବ ହୋଇ ନଥିଲା । ମାତ୍ର ୧୯୯୦ରେ ବିଜୁବାବୁ ପୁନରାୟ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଦାୟିତ୍ୱ ନେବା ପରେ ଏହି ବ୍ୟବସ୍ଥାକୁ କେବଳ ପୁନରୁଜ୍ଜିତ ଓ ପୁନଃସଂସ୍ଥାପିତ କରି ନଥିଲେ, ଅପିତୁ ଏଥିରେ ଅନେକ ସଂସ୍କାର ଆଣି ଗ୍ରାମପଞ୍ଚାୟତ, ପଞ୍ଚାୟତ ସମିତି ଓ ଜିଲ୍ଲା ପରିଷଦଗୁଡ଼ିକୁ ଅଧିକରୁ ଅଧିକ ଲୋକାଭିମୁଖୀ କରାଇ ପାରିଥିଲେ ।

ଅବଶ୍ୟ ଏହା ସତ୍ୟ ଯେ, ଜିଲ୍ଲା ପରିଷଦଗୁଡ଼ିକୁ ଆହୁରି ଅଧିକ ଲୋକାଭିମୁଖୀ କରାଇବାର ଆବଶ୍ୟକତା ରହିଅଛି । ଜିଲ୍ଲା ପରିଷଦମାନ ବର୍ତ୍ତମାନ ବହୁଳଭାବେ ଅମଲାତନ୍ତ୍ରର ଜାଲରେ ଛନ୍ଦିହୋଇ ନିଜ ପାଇଁ ସ୍ୱାୟତ୍ତତା ତିଆରି କରିବାରେ ସମର୍ଥ ହୋଇପାରି ନାହାନ୍ତି । ତେଣୁ ଜିଲ୍ଲା ପରିଷଦ ଏକ ଦନ୍ତ- ନଖ ବିହୀନ କାଗଜ ବାଘଠାରୁ ଅଧିକ କିଛି ନୁହେଁ । ଏ ଦିଗରେ ବ୍ୟାପକ ସଂସ୍କାର ତଥା

ଜିଲ୍ଲା ପରିଷଦମାନଙ୍କୁ ଅଧିକରୁ ଅଧିକ ଆର୍ଥିକ ଓ ବିକାଶମୂଳକ କାର୍ଯ୍ୟର ଅଧିକାର ମିଳିବା ଉଚିତ । ନଚେତ୍ ଏହା ସ୍ଥାପନ ହେବାର ଉଦ୍ଦେଶ୍ୟ ବ୍ୟର୍ଥ ହୋଇଯିବ ।

ଏହା ସତ୍ତ୍ୱେ ମଧ୍ୟ ଏକଥା ମୁକ୍ତ କଣ୍ଠରେ ସ୍ୱୀକାର କରିବାକୁ ହେବ ଯେ, ପଞ୍ଚାୟତିରାଜ ବ୍ୟବସ୍ଥା ମାଧ୍ୟମରେ ସମାଜର ଗରିବ, ଅବହେଳିତ ଓ ସାଧାରଣ ଗ୍ରାମୀଣ ମନୁଷ୍ୟର ବହୁବିଧ ସମସ୍ୟାକୁ ସମାଧାନ କରିବାରେ ସହାୟକ ହୋଇପାରୁଛି ।

ମାର୍ଚ୍ଚ ୫ ତାରିଖ ହେଉଛି କଳିଙ୍ଗ କେଶରୀ ବିଜୁବାବୁଙ୍କ ଜୟନ୍ତୀ ତିଥି । ଏହି ଦିବସକୁ ପ୍ରତିବର୍ଷ ପଞ୍ଚାୟତିରାଜ ଦିବସ ରୂପେ ରାଜ୍ୟ ସରକାର ପାଳନ କରୁଛନ୍ତି । ଆଜି ସେହି ଶୁଭ ଦିବସ ଉପଗତ । ଓଡ଼ିଶାର ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ଓ ମାନ୍ୟବର ପଞ୍ଚାୟତିରାଜ ବିଭାଗର ମନ୍ତ୍ରୀ ଶ୍ରୀଯୁକ୍ତ କଳ୍ପତରୁ ଦାସଙ୍କ ବଳିଷ୍ଠ ଓ ଦୃଢ଼ ନୀତି ବଳରେ ଏ ବ୍ୟବସ୍ଥା ଓଡ଼ିଶାର କୋଟି କୋଟି ଜନସାଧାରଣଙ୍କ ଜୀବନଧାରାକୁ ପ୍ରଭାବିତ କରିପାରିଛି ଏବଂ ଓଡ଼ିଶା ଦ୍ରୁତ ବିକାଶ ମାର୍ଗରେ ଅଗ୍ରଗତି କରିବାରେ ସକ୍ଷମ ହୋଇଛି ।

ଓଡ଼ିଶାର ସମସ୍ତ ଗ୍ରାମପଞ୍ଚାୟତର ସରପଞ୍ଚ, ସମିତି ସଦସ୍ୟ, ୱାର୍ଡମେମ୍ବର, ପଞ୍ଚାୟତ ସମିତିର ଅଧ୍ୟକ୍ଷ/ଅଧ୍ୟକ୍ଷା, ଜିଲ୍ଲା ପରିଷଦର ସଭ୍ୟା/ସଭ୍ୟ ଓ ଜିଲ୍ଲା ପରିଷଦର ସଭାନେତ୍ରୀ/ସଭାପତି ତଥା ଉପସଭାନେତ୍ରୀ/ଉପସଭାପତି ଓ ପଞ୍ଚାୟତ ୱାର୍ଡମେମ୍ବରମାନଙ୍କୁ ଉତ୍କଳ ପ୍ରସଙ୍ଗ ଆଜିର ଏହି ଶୁଭ ପଞ୍ଚାୟତିରାଜ ଦିବସରେ ଅଭିନନ୍ଦନ ଜ୍ଞାପନ କରିବା ସହିତ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ନେତୃତ୍ୱରେ ଏକ ମହାନ୍ ବିକଶିତ ରାଜ୍ୟଭାବେ ଗଢ଼ି ତୋଳିବା ପାଇଁ ସଂକଳ୍ପବଦ୍ଧ ହେବାକୁ ଆହ୍ୱାନ ଜଣାଉଅଛି ।

ବନ୍ଦେ ଉତ୍କଳ ଜନନୀ

---

## ଅଭିନନ୍ଦନ

ପରିଶେଷରେ ସମସ୍ତ ପରୀକ୍ଷା ଓ ଧୈର୍ଯ୍ୟର ପରିସମାପ୍ତି ଘଟାଇ କେନ୍ଦ୍ର ସରକାର ଓଡ଼ିଆ ଭାଷାର ଶାସ୍ତ୍ରୀୟ ମାନ୍ୟତାକୁ ବିଧିବଦ୍ଧଭାବେ ଘୋଷଣା କରି ସାଢ଼େ ଚାରିକୋଟି ଓଡ଼ିଆଙ୍କ ଧନ୍ୟବାଦର ପାତ୍ର ହୋଇପାରିଛନ୍ତି । ଓଡ଼ିଆ ଭାଷା ଯେ ଦୁଇହଜାର ବର୍ଷର ଏକ ପ୍ରାଚୀନ ଭାଷା ଏବଂ ଏହା ସଂସ୍କୃତ ଇତ୍ୟାଦି ଅନ୍ୟ କୌଣସି ଭାଷାର ଦୁହିତା ନୁହେଁ, ଏହା ମହାଦେବୀଙ୍କ ପରି ସ୍ୱୟଂଭୂ ଭାଷା, ଏହା ପ୍ରମାଣିତ ହୋଇଯାଇଛି । କୋଟି କୋଟି ଲୋକ ଶହ ଶହ ବର୍ଷ ଧରି ଏ ଭାଷାକୁ ଏକ ବ୍ୟବହାରିକ ଭାଷାର ରୂପ ପ୍ରଦାନ କରିଛନ୍ତି । ଭାଷାର ନାମ ଅନୁଯାୟୀ ରାଜ୍ୟର ନାମ ଓଡ଼ିଶା ଓ ଆମେ ଓଡ଼ିଆ ବୋଲାଇବାର ସୁଯୋଗ ଲାଭ କରିପାରିଛୁଁ ।

ଓଡ଼ିଆ ଭାଷାର ଶାସ୍ତ୍ରୀୟ ମର୍ଯ୍ୟାଦା ଲାଭ ପାଇଁ ବର୍ଷ ବର୍ଷ ଧରି ଗବେଷଣା କରିଥିବା ଆମ ଭାଷାର ଗବେଷକ, ଭାଷାତତ୍ତ୍ୱବିତ୍, ସାହିତ୍ୟିକ ଓ ବୁଦ୍ଧିଜୀବୀମାନଙ୍କୁ ବିନମ୍ର କୃତଜ୍ଞତା ଜ୍ଞାପନ କରାଯାଉଛି । ରାଜ୍ୟ ସରକାର, ବିଶେଷକରି ଆମର ପ୍ରିୟ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ଓ ସଂସ୍କୃତି ମନ୍ତ୍ରୀ ଶ୍ରୀଯୁକ୍ତ ମହେଶ୍ୱର ମହାନ୍ତି ତଥା ସମଗ୍ର ଶାସନକଳ ଏ ଦିଗରେ ଯେଭଳି ପଦକ୍ଷେପ ନେଇ ଓଡ଼ିଆ ଭାଷାକୁ ଦୁଇ ହଜାର ବର୍ଷର ପୁରାତନ ପ୍ରଚଳିତ ଭାଷା ବୋଲି ଯୁକ୍ତି ସହିତ ପ୍ରମାଣିତ କରାଇ ପାରିଲେ, ତାହା କମ୍ କଥା ନୁହେଁ । ତେଣୁ ଏ ଜାତି ଏମାନଙ୍କ ନିକଟରେ ମଧ୍ୟ କୃତଜ୍ଞ ।

ଓଡ଼ିଆ ଭାଷାର ଶାସ୍ତ୍ରୀୟ ମାନ୍ୟତା ଲାଭ, ଓଡ଼ିଆ ଜାତି ଓ ଓଡ଼ିଶା ପ୍ରଦେଶ ପାଇଁ ଏକବିଂଶ ଶତାବ୍ଦୀର ଏକ ଶ୍ରେଷ୍ଠ ଉପଲବ୍ଧି । ଏହାକୁ କୌଣସି ବ୍ୟକ୍ତି ବା ଗୋଷ୍ଠୀ ନିଜର ଉପଲବ୍ଧି ଭାବେ ଯଦି ପ୍ରଚାର କରେ, ତେବେ ତାହା ହେବ ଅତ୍ୟନ୍ତ ଦୁର୍ଭାଗ୍ୟଜନକ । ଏହି ମହାନ୍ ଉପଲବ୍ଧିର ହକ୍‌ଦାର ସାରା ଓଡ଼ିଆ ଜାତି । ଏହାକୁ ନେଇ ହୀନମନ୍ୟତା ଓ ରାଜନୀତି ନହେଲେ, ଆମର ଜାତୀୟ ମନୋଭାବ ଅଧିକ ଉଜାଗର ହୋଇପାରିବ ।

ଆଜିର ଏହି ଶୁଭ ଉପଲବ୍ଧିକୁ ଆସନ୍ତୁ ସମସ୍ତେ ସମାନଭାବେ ଅଂଶୀଦାର ହୋଇ ପାଳନ କରିବା । ଏ ଅବସରରେ ଉତ୍କଳ ପ୍ରସଙ୍ଗ ସାରା ପୃଥିବୀର ଓଡ଼ିଆ ଭାଷାଭାଷୀଙ୍କୁ ହାର୍ଦ୍ଦିକ ଅଭିନନ୍ଦନ ଜ୍ଞାପନ କରୁଛି ।

ଜୟ ଓଡ଼ିଶା, ଜୟ ଓଡ଼ିଆ

# ପଞ୍ଚାୟତିରାଜ ଓ ମୋ'ସ୍ୱପ୍ନର ଭାରତବର୍ଷ

**ବିଜୁ ପଟ୍ଟନାୟକ**

ଷଷ୍ଠ ଦଶକରେ ସେତେବେଳର ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ କହିଥିଲେ ସରପଞ୍ଚ ହେଉଛି ପଞ୍ଚାୟତିରାଜର ମୁଖ୍ୟମନ୍ତ୍ରୀ । ଗ୍ରାମାଞ୍ଚଳର ବିକାଶକୁ ତ୍ୱରାନ୍ୱିତ କରିବା ପାଇଁ ସେ ପଞ୍ଚାୟତ ପଞ୍ଚାୟତ ଭିତରେ ଉନ୍ନୟନ କ୍ଷେତ୍ରରେ ପ୍ରତିଯୋଗିତାମୂଳକ ମନୋଭାବ ସୃଷ୍ଟି କରିଥିଲେ । ସର୍ବୋତ୍କୃଷ୍ଟ ବିବେଚିତ ଗ୍ରାମପଞ୍ଚାୟତ ସମିତି ପାଇଁ ଜିଲ୍ଲାସ୍ତରରେ ଆକର୍ଷଣୀୟ ପୁରସ୍କାର ବ୍ୟବସ୍ଥା କରାଯାଇଥିଲା ।



ଦ୍ୱିତୀୟବାର ମୁଖ୍ୟମନ୍ତ୍ରୀ ଆସନରେ ଅଧିଷ୍ଠିତ ହେବାପରେ ଶ୍ରୀ ବିଜୁ ପଟ୍ଟନାୟକ ପଞ୍ଚାୟତିରାଜ ଅନୁଷ୍ଠାନଗୁଡ଼ିକ ସକ୍ରିୟ କରିବାକୁ ଉଦ୍ୟମ ଆରମ୍ଭ କଲେ । ନିର୍ବାଚନରେ ମହିଳାମାନଙ୍କ ପାଇଁ ସ୍ୱତନ୍ତ୍ର ଭାବରେ ସ୍ଥାନ ସଂରକ୍ଷଣ କରାଯିବାରୁ ୨୭ ହଜାର ମହିଳା ନିର୍ବାଚିତ ପ୍ରତିନିଧି ହେବାର ଗୌରବ ହାସଲ କଲେ । ଗ୍ରାମପଞ୍ଚାୟତରେ ସରପଞ୍ଚ ପୁରୁଷ ଥିଲେ ମହିଳା ନାଏବ ସରପଞ୍ଚ ଏବଂ ପଞ୍ଚାୟତିରାଜ ସମିତିରେ ପୁରୁଷ ଚେୟାରମ୍ୟାନ ଥିଲେ, ମହିଳା ଭାଇସ୍ ଚେୟାରମ୍ୟାନ୍ ରହିବା ପାଇଁ ଆଇନ୍ ପ୍ରଣୟନ କରାଗଲା । ଗ୍ରାମାଞ୍ଚଳର ବିକାଶ ପାଇଁ ଆଇନ ପ୍ରଣୟନ କରାଗଲା । ଗ୍ରାମାଞ୍ଚଳର ବିକାଶ ପାଇଁ ପ୍ରାଥମିକ ଶିକ୍ଷା, ସ୍ୱାସ୍ଥ୍ୟ, ବନୀକରଣ, ପୁଷ୍ଟିକର ଖାଦ୍ୟ ଯୋଗାଣ, ଅତ୍ୟାବଶ୍ୟକ ସାମଗ୍ରୀ ବଣ୍ଟନ କ୍ଷେତ୍ରରେ ମହିଳା ପ୍ରତିନିଧିମାନଙ୍କୁ ଦାୟିତ୍ୱରେ ରଖିବା ପାଇଁ ସେ ନିର୍ଦ୍ଦେଶ ଦେଲେ ।

୧୯୯୩ ମାର୍ଚ୍ଚ ୫ ତାରିଖ ଦିନ ତାଙ୍କ ଜନ୍ମ ଦିନରେ ରାଜଧାନୀ ଭୁବନେଶ୍ୱରରେ ରାଜ୍ୟସ୍ତରୀୟ ପଞ୍ଚାୟତିରାଜ ଦିବସ ପାଳିତ ହୋଇଥିଲା । ଏହି ସମାରୋହରେ ଓଡ଼ିଶାର ପୁରପଲ୍ଲୀରୁ ସମବେତ ହୋଇଥିବା ପଞ୍ଚାୟତିରାଜ ଅନୁଷ୍ଠାନ ଗୁଡ଼ିକର ନିର୍ବାଚିତ ପ୍ରତିନିଧିମାନଙ୍କୁ ଉଦ୍‌ବୋଧନ ଦେଇ ସେ କହିଥିଲେ ଏହି ଅନୁଷ୍ଠାନଗୁଡ଼ିକୁ ଅଧିକ ଦକ୍ଷ, ସକ୍ରିୟ ଓ ମଜଭୁତ୍ ନ କଲେ ଉନ୍ନୟନମୂଳକ ଯୋଜନା କାର୍ଯ୍ୟକାରୀ କରିବା କ୍ଷେତ୍ରରେ ଜନସହଯୋଗ ମିଳିବା କଷ୍ଟକର ହେବ ।

ସେଠାରେ ସ୍ୱର୍ଗୀୟ ପଟ୍ଟନାୟକଙ୍କର ଅଭିଭାଷଣ ନିମ୍ନରେ ପ୍ରଦତ୍ତ ହେଲା –

ପଞ୍ଚାୟତ ସମିତି ଓ ଗ୍ରାମପଞ୍ଚାୟତ ସଭ୍ୟ, ସଭ୍ୟାବୃନ୍ଦ !

ବହୁତ ଦିନ ତଳେ ମୁଁ ଗୋଟିଏ ନୂଆ ଭାରତ ବର୍ଷର ସ୍ୱପ୍ନ ଦେଖୁଥିଲି । ମୋ ସ୍ୱପ୍ନର ଭାରତ ରେ ଗଣତନ୍ତ୍ର କେଇଜଣ କୁହାଳିଆ ବା ତଥାକଥିତ ବୁଦ୍ଧିଜୀବୀଙ୍କ ବିଳାସ ହୋଇ ରହି ନଥାନ୍ତା । ମୁଁ ସ୍ୱପ୍ନ ଦେଖୁଥିଲି ଏପରି ଏକ ଭାରତବର୍ଷ ଯେଉଁଠାରେ ଗଣତନ୍ତ୍ର କେବଳ ନିର୍ବାଚନସର୍ବସ୍ୱ ହେବ ନାହିଁ । ଏହା ହେବ ଲୋକଙ୍କୁ ପ୍ରତ୍ୟେକ କ୍ଷେତ୍ରରେ ଘନିଷ୍ଠଭାବେ ଜଡ଼ିତ କରାଇବାର ଏକ ମାଧ୍ୟମ । ଗାଁ ଗଣ୍ଡା ହେଉଛି ଭାରତର ଆତ୍ମା । ମୋ ସ୍ୱପ୍ନର ଭାରତରେ ଗାଁ ଗହଳିରୁ ହିଁ ଗଣତନ୍ତ୍ର ଆରମ୍ଭ ହୋଇ କ୍ରମଶଃ ଉପରକୁ ପ୍ରସାରିତ ହୋଇଥାନ୍ତା ।

୩୨ ବର୍ଷ ତଳେ ମୋତେ ଓଡ଼ିଶାର ଜନସାଧାରଣଙ୍କ ଅଭୂତପୂର୍ବ ସମର୍ଥନ ମିଳିଥିଲା । ସେତେବେଳେ ମୁଁ ଗଣତନ୍ତ୍ରରେ ଲୋକଙ୍କୁ ସଂଶ୍ଳିଷ୍ଟ କରି ରାଜ୍ୟର ପ୍ରତ୍ୟେକଟି ଗ୍ରାମକୁ ନୂଆକରି ଗଢ଼ିବାର ପ୍ରକ୍ରିୟା ଆରମ୍ଭ କରିଥିଲି । ଏଥିପାଇଁ ଅନେକଗୁଡ଼ିଏ କାର୍ଯ୍ୟକ୍ରମ ହାତକୁ ନିଆଯାଇଥିଲା ଏବଂ ଲୋକଙ୍କ ହାତରେ କ୍ଷମତା ଓ ଦାୟିତ୍ୱ ଦେବା ପାଇଁ ଅନେକ ନୂଆ ଆଇନ ମଧ୍ୟ ତିଆରି କରାଯାଇଥିଲା । ଷଷ୍ଠ ଦଶକରେ ରାଜନୈତିକ ଝଡ଼ଝଞ୍ଜାରେ ସେହି ସ୍ୱପ୍ନକୁ ସାକାର କରିବାର କାର୍ଯ୍ୟ ଅସମାପ୍ତ ରହିଯାଇଥିଲା । ଆଜି ମୁଁ ଯେତେବେଳେ ପଛକୁ ଫେରି ଚାହୁଁଛି, ମୋତେ କିଛିଟା ହତାଶା, କିଛିଟା ବାକି ରହିଥିବା କାମ ଓ କିଛିଟା ପୂରା ହୋଇ ନ ଥିବା ପ୍ରତିଶ୍ରୁତି ଅସ୍ତବ୍ୟସ୍ତ କରୁଛି ।

ଆପଣମାନଙ୍କର ନାହିଁ ନଥିବା ସମର୍ଥନ ପାଇ ଦ୍ୱିତୀୟ ଥର ପାଇଁ ଆମେ ସମସ୍ତେ ଆମର ଜୟଯାତ୍ରା ଆରମ୍ଭ କରିଛୁଁ । ଗ୍ରାମପଞ୍ଚାୟତ ଓ ପଞ୍ଚାୟତ ସମିତି ସମ୍ପର୍କରେ ପ୍ରଚଳିତ ଆଇନଗୁଡ଼ିକୁ ସଂଶୋଧନ କରାଯାଇ ତ୍ରିସ୍ତରୀୟ ବ୍ୟବସ୍ଥା ପ୍ରବର୍ତ୍ତନ କରିବା ପାଇଁ ଏକ ସମ୍ପୂର୍ଣ୍ଣ ନୂଆ ଆଇନ ପ୍ରଣୟନ କରାଯାଇଛି । ଗ୍ରାମପଞ୍ଚାୟତ ଓ ପଞ୍ଚାୟତସମିତିଗୁଡ଼ିକ ପାଇଁ ନିର୍ବାଚନ ଶେଷ ହୋଇଛି । ଜିଲ୍ଲା ପରିଷଦ ପାଇଁ ଖୁବ୍ ଶୀଘ୍ର ନିର୍ବାଚନ କରାଯିବ ।

ସେ ସମୟ ଓ ଆଜି ଭିତରେ ଅନେକଟା ତଫାତ୍ ଆପଣମାନେ ଲକ୍ଷ୍ୟ କରୁଥିବେ । ଏହି ପରିବର୍ତ୍ତନର ଆହ୍ୱାନ ହେଉଛି – ପଞ୍ଚାୟତିରାଜ ଅନୁଷ୍ଠାନଗୁଡ଼ିକୁ ଅଧିକ ପ୍ରତିନିଧିମୂଳକ କରିବା, ସେଗୁଡ଼ିକୁ ଅଧିକ କାର୍ଯ୍ୟକାଳ ଦେବା ଓ ସେଥିପାଇଁ ଅଧିକ ସମ୍ବଳର ବ୍ୟବସ୍ଥା କରିବା । କାରଣ ଆମର ଅନୁଷ୍ଠାନଗୁଡ଼ିକ ଅଧିକ ଦକ୍ଷ, ସକ୍ରିୟ ଓ ମଜଭୁତ୍ ନ ହେଲେ ଉନ୍ନୟନ ଯୋଜନା କରିବା ଓ ଜନସହଯୋଗ ମାଧ୍ୟମରେ ସେଗୁଡ଼ିକୁ ଠିକ୍ ରୂପେ କାର୍ଯ୍ୟକାରୀ କରାଇବା ମୁସ୍କିଲ ହେବ । ଏହି ପରିବର୍ତ୍ତନ ମାଧ୍ୟମରେ ଆମେ ବଡ଼ବଡ଼ କଥା ଅପେକ୍ଷା ପ୍ରକୃତ କାମ କରିପାରିବା । ଆମେ କେବଳ କାମ ହିଁ ଚାହୁଁ । ଆପଣମାନଙ୍କ ଭିତରୁ ଅନେକ ପ୍ରଶ୍ନ କରୁଛନ୍ତି –ମୋର କ୍ଷମତା କ'ଣ ? ମୋର କାମ କ'ଣ ? କୌଣସି ବ୍ୟକ୍ତିବିଶେଷକୁ କ୍ଷମତା ଦିଆଯାଏ ନାହିଁ । କ୍ଷମତା ଦିଆଯାଏ ଏକ ପ୍ରତିନିଧିମୂଳକ ବ୍ୟବସ୍ଥାକୁ । ପଞ୍ଚାୟତିରାଜ ବ୍ୟବସ୍ଥା ଏକ ପ୍ରତିନିଧିମୂଳକ ବ୍ୟବସ୍ଥା ହୋଇଥିବାରୁ ସ୍ୱାସ୍ଥ୍ୟ, ଶିକ୍ଷା, ସମାଜ ମଙ୍ଗଳ, ଦାରିଦ୍ର୍ୟ ଦୂରୀକରଣ, ବୃକ୍ଷରୋପଣ, ପରିବେଶ, କୃଷି, ପଶୁପାଳନ, ଜଳସେଚନ ଏବଂ ରାସ୍ତାଘାଟ ଆଦି ବିଷୟରେ ନିଷ୍ପତ୍ତି ନେବାର କ୍ଷମତା ଏହି ସଂସ୍ଥା ଉପରେ ନ୍ୟସ୍ତ କରାଯାଇଛି । ଏହି ସମ୍ମିଳନୀ ଉପଲକ୍ଷେ ଆପଣମାନଙ୍କୁ ଯେଉଁ ପୁସ୍ତିକା ସବୁ ଦିଆଯାଇଛି, ସେଥିରୁ ଭଲ ଭାବେ ଜଣାଯିବ ଯେ, ଯୋଜନା ତିଆରି କରିବା, ତାକୁ କାର୍ଯ୍ୟକାରୀ କରିବା ଏବଂ ଏ ସମସ୍ତ କାର୍ଯ୍ୟକୁ ତଦାରଖ ଓ ତଦ୍‌ବିର କରିବାର ଦାୟିତ୍ୱ ସବୁ ଆପଣମାନଙ୍କର ।

ଆପଣମାନେ ଯଦି ଏହି କ୍ଷମତାକୁ ବିଜ୍ଞତାର ସହିତ ବ୍ୟବହାର କରନ୍ତି, ତା'ହେଲେ ପଞ୍ଚାୟତିରାଜ ବ୍ୟବସ୍ଥା ମଜଭୁତ୍ ହେବ । କ୍ଷମତା ସାଙ୍ଗକୁ ଆମେ ସମ୍ବଳ ମଧ୍ୟ ହସ୍ତାନ୍ତର କରିବୁ । ରାଜ୍ୟସ୍ତରରୁ କିଭଳି ଭାବେ ପଞ୍ଚାୟତିରାଜ ଅନୁଷ୍ଠାନମାନଙ୍କୁ ସମ୍ବଳ ଦିଆଯାଇପାରିବ ସେ ବିଷୟରେ ଏକ ସ୍ୱତନ୍ତ୍ର ଅର୍ଥ କମିଶନ୍ ଚିକିନିଖି କରି ପରୀକ୍ଷାନିରୀକ୍ଷା କରୁଛନ୍ତି । ଏହାର ସୁପାରିଶଗୁଡ଼ିକ ଖୁବ୍ ଶୀଘ୍ର ମିଳିଯିବ । ସମ୍ବଳକୁ ଚାହିଁ ପଞ୍ଚାୟତିରାଜ ଅନୁଷ୍ଠାନମାନଙ୍କର ଦାୟିତ୍ୱ ମଧ୍ୟ ନିର୍ଦ୍ଧାରଣ କରାଯିବ ।

ଶାସନ ବ୍ୟବସ୍ଥାର ପ୍ରକୃତ ବିକେନ୍ଦ୍ରୀକରଣ ପାଇଁ ମହିଳାମାନଙ୍କୁ ସଂଶ୍ଳିଷ୍ଟ କରାଇବା ଉପରେ ମୁଁ ସଦାବେଳେ ଜୋର୍ ଦେଇଆସିଛି । ନାରୀମାନଙ୍କର ସୃଜନଶୀଳତା ଓ ଶକ୍ତିକୁ ଉପଯୋଗ କରି ତାଙ୍କର ସ୍ୱତନ୍ତ୍ର ସମସ୍ୟାଗୁଡ଼ିକର ସମାଧାନ ପାଇଁ ଏ ଯାବତ୍ କୌଣସି ବିଧିବଦ୍ଧ ଉଦ୍ୟମ ଆରମ୍ଭ ହୋଇ ନାହିଁ । ସେମାନେ ଏ ପର୍ଯ୍ୟନ୍ତ ସମାଜ ଓ ଶାସନର ମୁଖ୍ୟ ସ୍ରୋତକୁ ଆସିପାରି ନାହାନ୍ତି । ପୁରୁଷପ୍ରଧାନ ସମାଜରେ ସେମାନଙ୍କ ସମସ୍ୟାପ୍ରତି ଯଥାର୍ଥ ଧ୍ୟାନ ଦିଆଯାଇନାହିଁ । ସେମାନଙ୍କଠାରେ ଥିବା ଅନ୍ୟକୁ ପ୍ରବର୍ତ୍ତାଇବା, ସହୃଦୟତା ଓ ସମ୍ବେଦନଶୀଳତା ପ୍ରଭୃତି ଗୁଣଗୁଡ଼ିକ ପଞ୍ଚାୟତିରାଜ ଅନୁଷ୍ଠାନଗୁଡ଼ିକର ଗୁଣାତ୍ମକମାନ ନିଶ୍ଚିତଭାବେ ବୃଦ୍ଧି କରିବ । ବିଶେଷ କରି ଶିକ୍ଷା, ସ୍ୱାସ୍ଥ୍ୟ, ବୃକ୍ଷରୋପଣ, ପରିବାର କଲ୍ୟାଣ, ମା' ଓ ଶିଶୁର ସ୍ୱାସ୍ଥ୍ୟରକ୍ଷା ଓ ପରିବେଶ ବିକାଶ ଭଳି କାମଗୁଡ଼ିକ ସେମାନଙ୍କ ଉପରେ ନ୍ୟସ୍ତ କରାଯିବା ଆବଶ୍ୟକ । ମୁଁ ଚାହେଁ, ଉପରୋକ୍ତ ବିଷୟଗୁଡ଼ିକ ପାଇଁ ଯେଉଁ ଷ୍ଟାଣ୍ଡିଂ କମିଟି ରହିବ, ତା'ର ନେତୃତ୍ୱ ମହିଳାମାନେ ନିଅନ୍ତୁ । ତାଙ୍କୁ ପୂର୍ଣ୍ଣ ସୁଯୋଗ ଦିଆଯାଉ ।

ମୁଁ ଏ କଥା ୧୯୬୧ରେ କହିଥିଲି, ଆଜି ମଧ୍ୟ କହୁଛି ଯେ, ଆମେ ସମାଜର ତଳସ୍ତରରେ ନେତା ଓ ନେତ୍ରୀ ଗଢ଼ିବା ପାଇଁ ଉଦ୍ୟମ କରୁଛୁ । ଏହା ଏକ ସହଜସାଧ୍ୟ ବ୍ୟାପାର ନୁହେଁ । ଏହି ଗଣଆନ୍ଦୋଳନକୁ ଆମେ କିଛି ରୂପ, କିଛି ଦିଗ୍‌ଦର୍ଶନ ଏବଂ

କିଛି କର୍ତ୍ତୃତ୍ୱ ଦେଉଛୁଁ । ସୁନ୍ଦର ଭବିଷ୍ୟତକୁ ଆଖି ଆଗରେ ରଖି ଅଧିକ ସମ୍ବେଦନଶୀଳତା ଓ ଦୂରଦର୍ଶିତା ସହ ଆମକୁ ଚିନ୍ତା କରିବାକୁ ହେବ । ଆମେ ଗୋଟିଏ ନୂଆ ଶିଶୁ ଗଢୁଛୁଁ - ଏକ ଗଣତାନ୍ତ୍ରିକ ଶିଶୁ, ଯାହାର ଚିନ୍ତାରେ ଓ କାର୍ଯ୍ୟରେ ନେତୃତ୍ୱର ବିକାଶ ଘଟିବ । ଲୋକଙ୍କ ଭିତରେ ଯେଉଁ ସୁପ୍ତ ଶକ୍ତି ରହିଛି, ପଞ୍ଚାୟତି ବ୍ୟବସ୍ଥା ମାଧ୍ୟମରେ ତାକୁ ଜାଗ୍ରତ କରିବାକୁ ହେବ, ବିକଶିତ କରିବାକୁ ହେବ ।

ଆମର ସାମୂହିକ ବିଜ୍ଞତା ଦ୍ୱାରା ଆମେ ସମୟକ୍ରମେ ଏପରି ବାଟ ବାହାର କରିବା ଯଦ୍ୱାରା ଜନସାଧାରଣଙ୍କର ବିଶ୍ୱାସ ଓ ନେତୃତ୍ୱକୁ ଆଧାର କରି ବର୍ତ୍ତମାନର ପ୍ରଶାସନିକ ବ୍ୟବସ୍ଥା ଦ୍ୱାରା ସମ୍ଭବ ହେଉଥିବା କାର୍ଯ୍ୟଠାରୁ ବହୁ ଅଧିକ ସଫଳତା ହାସଲ କରାଯାଇପାରିବ ।

ସବୁଠାରେ ଦୋଷ ତ୍ରୁଟି ଅଛି ଏବଂ ରହିବ । ମଣିଷ ଚରିତ୍ର ଓ ପ୍ରକୃତିକୁ ମୁଁ ଯାହା ବୁଝିଛି, ଏଥିରେ କିଛି ଅସ୍ୱାଭାବିକତା ନାହିଁ । ଆମେ ଏଭଳି ଏକ ଶାସନ ଢାଞ୍ଚା ତିଆରି କରିବା ଯେଉଁଥିରେ କି ପ୍ରତ୍ୟେକ ସ୍ତ୍ରୀ, ପୁରୁଷ, ବଡ଼ ହେଉ କି ଛୋଟ ହେଉ, ଉତ୍କୃଷ୍ଟ ହେଉ କି ନିକୃଷ୍ଟ ହେଉ, ନିଜ ପ୍ରତିଭା ବିକାଶ ପାଇଁ ସୁଯୋଗ ପାଇବେ । ଚୀନ ଦାର୍ଶନିକ ତାଇ ଚୁଙ୍ଗ କହିଥିଲେ, 'ଯଦି ଆମେ କୌଣସି ଏକ କାର୍ଯ୍ୟକୁ ତ୍ରୁଟିଶୂନ୍ୟ ଭାବେ କରିବାକୁ ବସିବା, ଆମକୁ ଅନନ୍ତକାଳ ପାଇଁ ଅପେକ୍ଷା କରିବାକୁ ହେବ ।' ଆମ ହାତରେ ସମୟ ନାହିଁ । ଗଲା ତିରିଶ ବର୍ଷ ଭିତରେ ଅନେକ କିଛି ସୁଯୋଗ ଆମର ହାତଛଡ଼ା ହୋଇଯାଇଛି । ତେଣୁ ଆମକୁ ଆଜି ସଙ୍କଳ୍ପ ନେବାକୁ ହେବ - ବିଜ୍ଞତା, ଦୂରଦୃଷ୍ଟି, କରୁଣା ଓ ଉତ୍ତମ ବୁଝାମୁଣାକୁ ପୁଞ୍ଜି କରି ଆମେ ଆମ ନିଜର ସମସ୍ୟା ସମାଧାନର ରାସ୍ତା ବାହାର କରିବା ।

# ଝଡର ଇଗଲ

**ବିମଳା ସିଂହ**

ହେ ବିଜୟାନନ୍ଦ ଜନ ହୃଦୟର
ତୁମେ ଚିର ବନ୍ଦନୀୟ
ତବ ସ୍ମୃତିରାଜି ଚଉଦିଗେ ଆଜି
ଚିରଦିନ ସ୍ମରଣୀୟ ।

ଧନ୍ୟ ତୁମ ଲୋକ ଆଉ ଦେଶ ପ୍ରୀତି
ଧନ୍ୟ ତୁମ ରାଜନୀତି
ମୁକୁଟ ବିହୀନ ରାଜା ଉତ୍କଳର
କରୁ ପ୍ରଣିପାତ ନିତି ।

ତୁମେ ଥିଲ କେତେ ଅଭିଯାନର
ଦୁଃସାହସିକ ଅଭିଯାତ୍ରୀ
କେତେ ନୂଆ ନୂଆ ବିଚାର ବିତର୍କ
ସଂଗ୍ରାମର ସେନାପତି ।

ହେ ରାଷ୍ଟ୍ରନାୟକ ତବ ସ୍ମରଣରେ
ପାଳୁ ତବ ଜନ୍ମଦିନ
'ପଞ୍ଚାୟତିରାଜ ଦିବସ' ରୂପରେ
ଆଜି ତାହା ବିଦ୍ୟମାନ ।

ତୁମେପରା ଥିଲ 'ଝଡର ଇଗଲ୍'
ମରି ମଧ୍ୟ ମରି ନାହଁ,
ଅପ୍ରେଲ ସତର ସତାନବେ ସିନା
ଅଲିଭା ଅକ୍ଷର ଗାର ।

ହେ ପ୍ରବାଦପୁରୁଷ ତବ ପାଦେ ଆମ
କୋଟି କୋଟି ନମସ୍କାର
ଘେନି ଆମ ପ୍ରୀତି ଦିଅ ଆଶୀର୍ବାଦ
ଥିଲେ ଥାଇ ବହୁଦୂର ।

ବି- ୮୪, କ୍ରିଷ୍ଣା ଗାର୍ଡେନ, ଫେଜ୍-୨
ଜାଗମରା, ଖଣ୍ଡଗିରି, ଭୁବନେଶ୍ୱର-୭୫୧୦୩୦

# ମହାନ ଜନନାୟକ ବିଜୁବାବୁ

ମହେଶ୍ୱର ମୂଳିଆ

ଉତ୍କଳ ଗୌରବ ମଧୁସୂଦନ ଓ ଉତ୍କଳ କେଶରୀ ମହତାବଙ୍କ ପରେ ଓଡ଼ିଆ ଜାତିର ଗୌରବମୟ ଇତିହାସରେ ଯଦି କାହାରି ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ, ତା'ହେଲେ ସେ ହେଉଛନ୍ତି କଳିଙ୍ଗର କୀର୍ତ୍ତିମାନ ପୁରୁଷ ବିଜୁ ପଟ୍ଟନାୟକ । ସେ ଥିଲେ ଆଧୁନିକ ଓଡ଼ିଶାର ବିଶ୍ୱକର୍ମା । ଉତ୍କଳୀୟ ସଂସ୍କୃତି ଓ ସ୍ୱାଭିମାନର ପ୍ରତୀକ । ମହାନ ସ୍ୱାଧୀନତା ସଂଗ୍ରାମୀ, ଦୁଃସାହସୀ ବୈମାନିକ, ରାଜନୀତିକ ଭାଗ୍ୟ ନିୟନ୍ତା, ଶାସନର ସୂତ୍ରଧର, ଦୀନ ଦୁଃଖୀର ଆଶା ଭରସା, ଲୋକପ୍ରିୟ ଜନନାୟକ, ସମାଜର ସେବକ ଆଦି ବିଭିନ୍ନ ଭୂମିକାରେ ତାଙ୍କର କର୍ମମୟ ଜୀବନର ସ୍ୱରୂପ ପ୍ରକଟିତ । ତାଙ୍କ ଭଳି ଆଦର୍ଶ ପୁରୁଷ, ଉତ୍ତୁଙ୍ଗ ବ୍ୟକ୍ତିତ୍ୱ, ପ୍ରଭାବଶାଳୀ ନେତୃତ୍ୱର ପଟ୍ଟାନ୍ତର ନାହିଁ । ଓଡ଼ିଶା ମାଟି ଓ ଓଡ଼ିଆ ଜାତି ପାଇଁ ତାଙ୍କର ଅବଦାନର କଳନା ନାହିଁ । ସେବା, ତ୍ୟାଗ, ତପସ୍ୟାର ତୁଳନା ନାହିଁ । ତାଙ୍କ ଭଳି ଜଣେ ଯୋଗଜନ୍ମା ବରପୁତ୍ରଙ୍କୁ ଜନ୍ମ ଦେଇ ଉତ୍କଳ ଜନନୀ ଧନ୍ୟା ହୋଇଛି ।

ଏକ ସମ୍ଭ୍ରାନ୍ତ, ସଂସ୍କୃତି ସଂପନ୍ନ ସ୍ୱାଧୀନତା ସଂଗ୍ରାମୀ ପରିବାରରେ ବିଜୁବାବୁ ଜନ୍ମ ହୋଇଥିଲେ । ପିତାମାତାଙ୍କଠାରୁ ସେ ନିର୍ଭୀକତାର ଶିକ୍ଷା, ଦୁଃସାହସିକତାର ଦୀକ୍ଷା ଗ୍ରହଣ କରିଥିଲେ । ମହାନ୍ ସ୍ୱପ୍ନ, ଦୃଢ଼ ସଂକଳ୍ପ ଓ କଠୋର ସାଧନା ତାଙ୍କୁ ଜୀବନର ସବୁକ୍ଷେତ୍ରରେ ସଫଳତାର ଶିଖରରେ ପହଞ୍ଚାଇ ପାରିଥିଲା । ତାଙ୍କର ଜୀବନ ଯେତିକି ଘଟଣାବହୁଳ, ସେତିକି ରୋମାଞ୍ଚକର । ବାଲ୍ୟକାଳରୁ ତାଙ୍କ ମନରେ ଜନସେବା ଓ ଦେଶଭକ୍ତିର ଭାବନା ଜାଗରିତ ହୋଇଥିଲା, ୧୯୨୬ ମସିହାରେ, ତାଙ୍କୁ ଯେତେବେଳେ ଦଶବର୍ଷ ବୟସ ସ୍ୱରାଜ ଆଶ୍ରମରେ ମହାତ୍ମା ଗାନ୍ଧୀଙ୍କ ଦର୍ଶନ ପାଇଁ ଲୋକ ଗହଳି ଠେଲି ପଶିବା ବେଳେ ପୋଲିସ ଲାଠିମାଡ଼ରେ ତାଙ୍କର ମୁଣ୍ଡ ଫାଟି ଯାଇଥିଲା । ମୁଣ୍ଡରୁ ରକ୍ତ ପୋଛି ଗାନ୍ଧିଜୀଙ୍କ ସାମନାରେ ସେ ସେଦିନ ଶପଥ ନେଇଥିଲେ, ଗୋରା ପୋଲିସର ଏ ଜୁଲମର ଦିନେ ପ୍ରତିଶୋଧ ନେବେ । ମିଶନ୍ ସ୍କୁଲରେ ପଢୁଥିବା ବେଳେ ଜଣେ ୟୁରୋପୀୟ ସର୍ଜେଣ୍ଟ ତାଙ୍କୁ ମାଡ଼ ଦେଇଥିଲେ । ଘରକୁ ଫେରିବା ପରେ ବାପା ପଚାରିଲେ, 'ନିଜର ମୁଣ୍ଡଟା ଫଟାଇ ଆସିଲୁ, ସର୍ଜେଣ୍ଟର ମୁଣ୍ଡ ଫଟାଇ ପାରିଲୁ ନାହିଁ ?' ଏ ଘଟଣାର ମାସକ ପରେ ବାରବାଟି କିଲାଠାରେ ହକି ଖେଳିଲାବେଳେ ବିଜୁବାବୁ ସେହି ସର୍ଜେଣ୍ଟର ଗୋଡ଼ ହକିଷ୍ଟିକରେ ଭାଙ୍ଗି ଦେଇଥିଲେ । ୧୯୩୦ ମସିହାରେ ଉତ୍କଳମଣିଙ୍କ ସହିତ ଡଙ୍ଗାରେ ରିଲିଫ୍ ବାଣ୍ଟିବା ପାଇଁ ବନ୍ୟାଞ୍ଚଳ ଯାଉଥିବାବେଳେ ନଈ ମଝିରେ ଗୋପବନ୍ଧୁଙ୍କ ଛତା ଖସି ପଡ଼ିଲା । ବିଜୁବାବୁ ଡଙ୍ଗାରୁ ବଢ଼ିଲା ନଈକୁ ଡେଇଁ ପଡ଼ି ଛତାକୁ ଉଦ୍ଧାର କରି ଆଣିଥିଲେ ।

ରେଭେନ୍ସା କଲେଜରେ ପଢ଼ିବା ବେଳେ ଦୁଇଜଣ ସାଥୀଙ୍କ ସହିତ ସେ ସାଇକେଲରେ କଟକରୁ ସୁଦୂର ପେଶବାରକୁ ଦୁର୍ଗମ ଅଭିଯାନରେ ଯାଇଥିଲେ । ବି.ଏସ୍.ସି. ପଢୁଥିବା ବେଳେ ସେ ବୈମାନିକ ହେବାର ସ୍ୱପ୍ନ ଦେଖୁଥିଲେ । ପାଇଲଟ ଟ୍ରେନିଂ ନେଇ ସେ ରଏଲଇଣ୍ଡିଆ ଏୟାର ଫୋର୍ସ ଓ ଇଣ୍ଡିଆନ ନ୍ୟାସନାଲ ଏୟାର ୱେଜରେ ଭର୍ତ୍ତି ହୋଇଥିଲେ । ପରବର୍ତ୍ତୀ ଜୀବନରେ ଜଣେ ସାହସୀ ଓ ସୁଦକ୍ଷ ପାଇଲଟ ଭାବରେ ସେ ବହୁ ଅସାଧ୍ୟ ସାଧନ କରି ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରରେ ଅଶେଷ ଖ୍ୟାତି ଅର୍ଜନ କରିଥିଲେ । କଲେଜ ଶିକ୍ଷା ପରେ ସେ ବ୍ରିଟିଶ ସରକାର ଅଧୀନରେ ପାଇଲଟ ଚାକିରିରେ ଭର୍ତ୍ତି ହୋଇଥିଲେ । ଭାରତର ବଡ଼ଲାଟ ଲର୍ଡ଼ ୱାଭେଲଙ୍କର ସେ ପାଇଲଟ ଥିଲେ । ବଡ଼ଲାଟଙ୍କ ଗୁପ୍ତ ଦଲିଲ ସବୁ ସେ ଗୋପନରେ ଗାନ୍ଧିଜୀଙ୍କୁ ଯୋଗାଇ ଦେଉଥିଲେ । ୧୯୪୦ ମସିହାରେ ଜୟପ୍ରକାଶ ନାରାୟଣଙ୍କ ସହ ତାଙ୍କର ସାକ୍ଷାତ ହୋଇଥିଲା । ବିଜୁବାବୁ ତାଙ୍କୁ ନିଜର ପ୍ରଥମ

ରାଜନୀତିକ ଗୁରୁ ରୂପେ ଗ୍ରହଣ କରିନେଇଥିଲେ । ସେହି ବର୍ଷ ସେ ପାଇଲଟ ଚାକିରି ଛାଡ଼ି ଜାତୀୟ ନେତାମାନଙ୍କ ସଂପର୍କରେ ଆସିଥିଲେ । 'ଭାରତ ଛାଡ଼' ଆନ୍ଦୋଳନରୁ ତାଙ୍କର ରାଜନୈତିକ ଜୀବନର ଆରମ୍ଭ ହୋଇଥିଲା । ୧୯୪୩ ମସିହାରେ ସେ ଦିଲ୍ଲୀରେ ଗିରଫ ହୋଇ ଲାଲକିଲାରେ ବନ୍ଦୀ ହୋଇ ରହିଥିଲେ । ତତ୍କାଳୀନ ଲାଟ ଚନ୍ଦୁଲାଲ ତ୍ରିବେଦୀ ତାଙ୍କୁ ପିଇବାକୁ ପାଣି ନଦେଇ ହାତକୁ ପରିସ୍ରା ବୋତଲ ଧରାଇ ଦେଇଥିଲେ । ବିଜୁବାବୁ ସେଇ ବୋତଲକୁ ଲାଟଙ୍କ ଉପରକୁ ଫିଙ୍ଗି ଥିଲେ ।

ଦ୍ୱିତୀୟ ବିଶ୍ୱଯୁଦ୍ଧ କାଳରେ ଜାପାନ, ବର୍ମା ଆକ୍ରମଣ କଲାବେଳେ ବିଜୁବାବୁ ନିଜ ଜୀବନ ବିପନ୍ନ କରି କେତେକ ବ୍ରିଟିଶ ପରିବାରକୁ ମୃତ୍ୟୁମୁଖରୁ ଉଦ୍ଧାର କରିଥିଲେ । ହିମାଳୟ ଉପରେ ବିମାନ ନେଇ ସେ ଚୀନର ବିପ୍ଳବୀମାନଙ୍କୁ ସାହାଯ୍ୟ କରିଥିଲେ । ଭାରତ ଛାଡ଼ ଆନ୍ଦୋଳନ କାଳରେ ସେ ଜୟପ୍ରକାଶ ନାରାୟଣ, ଅରୁଣା ଆସଫ୍ ଅଲ୍ଲୀ, ରାମ ମନୋହର ଲୋହିଆ, ଅଚ୍ୟୁତ ପଟ୍ଟବର୍ଦ୍ଧନ ପ୍ରଭୃତି ଜାତୀୟ ନେତାମାନଙ୍କୁ ନିଜ ଘରେ ଲୁଚାଇ ରଖିଥିଲେ । ଗୋପନରେ ନେତାଜୀଙ୍କ ପ୍ରଚାରପତ୍ର ବିମାନରୁ ବିତରଣ କରୁଥିଲେ । ୧୯୪୭ରେ ଡଚ–ଇଣ୍ଡୋନେସିଆ ଯୁଦ୍ଧ ଚାଲିଥିବାବେଳେ ବିଜୁବାବୁ ନେହରୁଙ୍କ ନିର୍ଦ୍ଦେଶରେ ଇଣ୍ଡୋନେସିଆର ପ୍ରଥମ ପ୍ରଧାନମନ୍ତ୍ରୀ ସୁଲତାନ ସାରିୟାର ଓ ମହମ୍ମଦ ହଟ୍ଟା ପ୍ରଭୃତି ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ବିମାନରେ ଜାକର୍ତ୍ତାରୁ ରେଙ୍ଗୁନ ଦେଇ ଦିଲ୍ଲୀକୁ ନେଇ ଆସିଥିଲେ । ରାଷ୍ଟ୍ରପତି ସୁକର୍ଣ୍ଣଙ୍କ ଜୀବନରକ୍ଷା କରିଥିଲେ । ତାଙ୍କର ଏହି ଅପୂର୍ବ ସାହସ ଓ ବୀରତ୍ୱ ପାଇଁ ଇଣ୍ଡୋନେସିଆ ସରକାର ତାଙ୍କୁ ସେ ଦେଶର ସର୍ବୋଚ୍ଚ ସମ୍ମାନ 'ଭୂମିପୁତ୍ର' ଉପାଧିରେ ସମ୍ମାନିତ କରିଥିଲେ । ଇଣ୍ଡୋନେସିଆ ସ୍ୱାଧୀନତା ସଂଗ୍ରାମରେ ସହଯୋଗ ପାଇଁ କୃତଜ୍ଞତା ସ୍ୱରୂପ ୧୯୫୦ରେ ତାଙ୍କୁ ୫୦୦ କୋଟି ଟଙ୍କା ଦିଆଯାଇଥିଲା । କିନ୍ତୁ ବିଜୁବାବୁ ତାକୁ ଇଣ୍ଡୋନେସିଆବାସୀଙ୍କ କଲ୍ୟାଣ ଉଦ୍ଦେଶ୍ୟରେ ଦାନ କରିଦେଇ ନିଜର ମହାନୁଭବତା ପ୍ରଦର୍ଶନ କରିଥିଲେ । ୧୯୪୮ ମସିହାରେ ପାକିସ୍ଥାନର ଭାରତ ଆକ୍ରମଣ କାଳରେ ବିଜୁବାବୁ ସର୍ବପ୍ରଥମେ ଭାରତୀୟ ସୈନ୍ୟମାନଙ୍କୁ ବିମାନରେ ବସାଇ ଶ୍ରୀନଗରରେ ପହଞ୍ଚାଇ ଦେଇଥିଲେ । ୧୯୬୨ ଚୀନ ଆକ୍ରମଣ କାଳରେ ସେ ନେହରୁଙ୍କ ନିର୍ଦ୍ଦେଶରେ ଗୋପନରେ ଆମେରିକା ଯାତ୍ରା କରିଥିଲେ । ୧୯୬୫ ଭାରତ–ପାକିସ୍ଥାନ ଯୁଦ୍ଧ କାଳରେ ପ୍ରଧାନମନ୍ତ୍ରୀ ଲାଲ ବାହାଦୂର ଶାସ୍ତ୍ରୀ ତାଙ୍କୁ ଇଣ୍ଡୋନେସିଆ ପଠାଇଥିଲେ । ବିଜୁବାବୁଙ୍କ ଉଦ୍ୟମରେ ଇଣ୍ଡୋନେସିଆ ପାକିସ୍ଥାନକୁ ଯୁଦ୍ଧ ବିମାନ ଯୋଗାଣ ବନ୍ଦ କରିଥିଲା । ଚୀନ ଆକ୍ରମଣ ବେଳେ ନେହରୁ ପ୍ରତିରକ୍ଷା ସଂକ୍ରାନ୍ତ ଗୁରୁତ୍ୱପୂର୍ଣ୍ଣ ବିଷୟରେ ବିଜୁବାବୁଙ୍କ ପରାମର୍ଶ ନେଉଥିଲେ । ବୈମାନିକ ଭାବରେ ଏହି ପାରଦର୍ଶିତା ଏବଂ ସ୍ୱାଧୀନତା ସଂଗ୍ରାମରେ ବୈପ୍ଳବିକ ଭୂମିକା ତାଙ୍କର ପରବର୍ତ୍ତୀ ଜୀବନକୁ ଜାଜ୍ୱଲ୍ୟମାନ କରିଥିଲା । ନେପୋଲିୟନ ବୋନାପାର୍ଟ ଥିଲେ ତାଙ୍କର ଆଦର୍ଶ ।

୧୯୪୬ ମସିହାରୁ ବିଜୁବାବୁ ପ୍ରତ୍ୟକ୍ଷ ରାଜନୀତିରେ ପ୍ରବେଶ କରିଥିଲେ । ସର୍ଦ୍ଦାର ପଟେଲଙ୍କ ପରାମର୍ଶକ୍ରମେ କଟକ ସହରରୁ ବିଧାନସଭାକୁ ନିର୍ବାଚିତ ହୋଇ ସେ ସାଧାରଣ କ୍ଷେତ୍ରରେ ଅବତୀର୍ଣ୍ଣ ହୋଇଥିଲେ । ଡକ୍ଟର ମହତାବଙ୍କର ସେ ଥିଲେ ଅତ୍ୟନ୍ତ ବିଶ୍ୱସ୍ତ ଓ ଅନୁଗତ । ସମସ୍ତ ରାଜନୈତିକ କାର୍ଯ୍ୟକ୍ରମରେ ସେ ତାଙ୍କର ଦକ୍ଷିଣହସ୍ତ ଭଳି କାର୍ଯ୍ୟ କରି ଆସିଥିଲେ । ଓଡ଼ିଶାର ରାଜନୀତିକୁ ଡଃ ମହତାବ ବିଜୁ ପଟ୍ଟନାୟକ ଓ ବୀରେନ୍ ମିତ୍ରଙ୍କ ସହଯୋଗରେ ନିୟନ୍ତ୍ରଣ କରୁଥିଲେ । ୧୯୫୭ ଦ୍ୱିତୀୟ ସାଧାରଣ ନିର୍ବାଚନ ପରେ ବିଜୁବାବୁ ଝାଡ଼ଖଣ୍ଡ ଓ କମ୍ୟୁନିଷ୍ଟ ଦଳର ସମର୍ଥନ ଯୋଗାଡ଼ କରି ମହତାବ ମନ୍ତ୍ରିମଣ୍ଡଳ ଗଠନରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ସେହି ମନ୍ତ୍ରିମଣ୍ଡଳରେ ବିଜୁବାବୁଙ୍କୁ ନେଇଥିଲେ ଭବିଷ୍ୟତରେ ଶାସନଗତ ଅସ୍ଥିରତାରୁ ଓଡ଼ିଶା ମୁକ୍ତ ହୋଇପାରିଥାନ୍ତା ବୋଲି ମହତାବବାବୁ ସ୍ୱୀକାର କରିଛନ୍ତି । ଦୁଇ ବର୍ଷ ପରେ ଅଣ କଂଗ୍ରେସ ସଭ୍ୟଙ୍କ ସମର୍ଥନରେ ଶାସନ ଚଳାଇବାରେ ଡଃ. ମହତାବଙ୍କ ଅନିଚ୍ଛା ଦେଖି ବିଜୁବାବୁ ଗଣତନ୍ତ୍ର ପରିଷଦ ସହିତ ମିଶି ମିଳିତ ମନ୍ତ୍ରିମଣ୍ଡଳ ଗଠନ ପାଇଁ ତାଙ୍କୁ ପ୍ରବର୍ତ୍ତାଇ ଥିଲେ । ତାଙ୍କ ଉଦ୍ୟମରେ ୧୯୫୯ ମଇ ମାସରେ ଡଃ. ମହତାବଙ୍କ ନେତୃତ୍ୱରେ ମିଳିତ ମନ୍ତ୍ରିମଣ୍ଡଳ ଗଠିତ ହୋଇଥିଲା ।

ବିଜୁବାବୁ ୧୯୬୧ ମସିହାରେ ପ୍ରଦେଶ କଂଗ୍ରେସ ସଭାପତି ନିର୍ବାଚିତ ହେବା ପରେ କଂଗ୍ରେସ ରାଜନୀତିରେ ଯୁବ ନେତୃତ୍ୱର ଅଭ୍ୟୁଦୟ ହୋଇଥିଲା । କେତେକ ଘଟଣାରେ ମହତାବଙ୍କ ସହିତ ବିଜୁବାବୁଙ୍କ ସଂପର୍କ ତିକ୍ତ ହୋଇ ପଡ଼ିଥିଲା । ବିଜୁବାବୁ ଯୁବ କଂଗ୍ରେସ କର୍ମୀଙ୍କୁ ନେଇ ମହତାବ ମିଳିତ ମନ୍ତ୍ରିମଣ୍ଡଳର ଇସ୍ତଫା ଦାବି କରି ସଫଳ ହୋଇଥିଲେ । ୧୯୬୧ ଫେବୃଆରୀ ୨୪ ତାରିଖରେ ମହତାବ ମନ୍ତ୍ରିମଣ୍ଡଳ ଇସ୍ତଫା ଦେଇଥିଲେ ।

୧୯୬୧ ଜୁନ ମାସରେ ଓଡ଼ିଶା ବିଧାନସଭାର ମଧ୍ୟବର୍ତ୍ତୀକାଳୀନ ତୃତୀୟ ସାଧାରଣ ନିର୍ବାଚନ ବିଜୁବାବୁଙ୍କ ନେତୃତ୍ୱରେ ଅନୁଷ୍ଠିତ ହୋଇ ଓଡ଼ିଶାରେ କଂଗ୍ରେସ ସର୍ବପ୍ରଥମ

ବିପୁଳ ସଂଖ୍ୟା ଗରିଷ୍ଠତା ହାସଲ କରିଥିଲା । ବିଧାନସଭାର ୧୪୦ଟି ଆସନ ମଧ୍ୟରୁ କଂଗ୍ରେସ ୮୨ଟି ସ୍ଥାନ ପାଇଥିଲା । ୧୯୬୧ ଜୁନ ୨୩ ତାରିଖରେ ବିଜୁ ପଟ୍ଟନାୟକଙ୍କ ମୁଖ୍ୟମନ୍ତ୍ରିତ୍ୱରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠିତ ହୋଇଥିଲା । ତାଙ୍କ ମନ୍ତ୍ରିମଣ୍ଡଳ କାଳରେ ରାଜ୍ୟର ଶିଳ୍ପର ବିକାଶ ପାଇଁ ବହୁ ପ୍ରଗତିଶୀଳ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଥିଲା । ସେଥି ମଧ୍ୟରେ ପାରାଦ୍ୱୀପ ବନ୍ଦର, ଖଣି ଅଞ୍ଚଳକୁ ସଂଯୋଗ ପାଇଁ ୯୧ କିଲୋମିଟର ଦଇତାରୀ-ପାରାଦ୍ୱୀପ ଏକ୍ସପ୍ରେସ ହାଇୱେ, ବାଲିମେଳା ବନ୍ଧ ଯୋଜନା, ତାଳଚେର ଥର୍ମାଲ ପ୍ରକଳ୍ପ, ସୁନାବେଡ଼ା ମିଗ୍ କାରଖାନା, ବଡ଼ବିଲ ଲୁହା କାରଖାନା, ନାଲକୋ ଆଲୁମିନିୟମ ପ୍ରକଳ୍ପ ଓ ପଞ୍ଚାୟତ ସ୍ତରରେ ବହୁ କ୍ଷୁଦ୍ର ଓ ମଧ୍ୟମ ଶିଳ୍ପ ପ୍ରତିଷ୍ଠା ଉଲ୍ଲେଖଯୋଗ୍ୟ । ଓଡ଼ିଶା ରାଜ୍ୟ ବିଦ୍ୟୁତ୍ ବୋର୍ଡ଼ (୧୯୬୧), ଓଡ଼ିଶା ଶିଳ୍ପ ବିକାଶ ନିଗମ (୧୯୬୨), ଓଡ଼ିଶା କ୍ଷୁଦ୍ର ଶିଳ୍ପ ନିଗମ (୧୯୬୧-୬୨) ଆଦି ବହୁ ନିଗମ ଓ ବୋର୍ଡ଼ ସ୍ଥାପନ କରାଯାଇଥିଲା । ଗ୍ରାମାଞ୍ଚଳରେ ଶିଳ୍ପର ବିସ୍ତାର ପାଇଁ ଗ୍ରାମପଞ୍ଚାୟତ ଶିଳ୍ପ ସଂସ୍ଥା ପ୍ରତିଷ୍ଠା ହୋଇଥିଲା । ବିଜୁବାବୁ ଓଡ଼ିଶାରେ ପଞ୍ଚାୟତ ଶିଳ୍ପର ଜନ୍ମଦାତା । ରାଉରକେଲାଠାରେ ଆଞ୍ଚଳିକ ଇଂଜିନିୟରିଂ କଲେଜ ଏବଂ ବିଭିନ୍ନ ଅଞ୍ଚଳରେ ବିଜ୍ଞାନ କଲେଜ, ଇଂଜିନିୟରିଂ ଓ ପଲିଟେକନିକ୍ ଅନୁଷ୍ଠାନ ସ୍ଥାପନ କରାଯାଇଥିଲା । ଶିକ୍ଷାର ପ୍ରସାର, ବିଶେଷତଃ ବୈଷୟିକ ଶିକ୍ଷା ପାଇଁ ବ୍ୟାପକ ବ୍ୟବସ୍ଥା କରାଯାଇଥିଲା । ଭୁବନେଶ୍ୱରରେ ସୈନିକ ବିଦ୍ୟାଳୟ, ଆଞ୍ଚଳିକ ତାଲିମ କଲେଜ ପ୍ରତିଷ୍ଠା ହୋଇଥିଲା । ପ୍ରଥମ ଶ୍ରେଣୀଠାରୁ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ପ୍ରାଥମିକ ବିଦ୍ୟାଳୟ ପାଠ୍ୟପୁସ୍ତକଗୁଡ଼ିକ ଜାତୀୟକରଣ କରାଯାଇଥିଲା । ଚାରିବାଟିଆ ସାମରିକ ବିମାନ ଅବତରଣ କେନ୍ଦ୍ର, ସମ୍ବଲପୁର, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ଓଡ଼ିଶା କୃଷି ବିଶ୍ୱବିଦ୍ୟାଳୟ, ବୁର୍ଲା ଇଂଜିନିୟରିଂ ଓ ମେଡ଼ିକାଲ କଲେଜ ପ୍ରତିଷ୍ଠା ବିଜୁବାବୁଙ୍କ ଶାସନର ଉଲ୍ଲେଖନୀୟ ଅବଦାନ । ବିଜୁବାବୁ ୧୯୬୩ ଅକ୍ଟୋବର ୧ ତାରିଖ ପର୍ଯ୍ୟନ୍ତ ମୁଖ୍ୟମନ୍ତ୍ରୀ ଦାୟିତ୍ୱରେ ରହି ଓଡ଼ିଶାରେ ନିର୍ମାଣ ଯୁଗର ଶୁଭାରମ୍ଭ କରିଥିଲେ । କାମରାଜ ଯୋଜନାରେ ସେ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଇ କଂଗ୍ରେସର ସାଂଗଠନିକ କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ । ବିଜୁବାବୁ ଥିଲେ ଏହି କାମରାଜ ଯୋଜନାର ଅନ୍ୟତମ ପ୍ରଣେତା ।

> ସେ କହୁଥିଲେ, ମୁଁ ହେଉଛି ଦଳ, ମୁଁ ସରକାର । ମୋ ଦଳର ପ୍ରଚାର ପାଇଁ ଅନ୍ୟ ନେତାର କୌଣସି ଆବଶ୍ୟକତା ନାହିଁ । ବିରୋଧୀ ଦଳ ପ୍ରତି ତାଙ୍କଠାରେ ଅହନ୍ତା ବା ଅସୂୟାଭାବ ନଥିଲା ।

୧୯୬୯ ମସିହାରେ ଜାତୀୟ କଂଗ୍ରେସ ଭାଗ ଭାଗ ହୋଇ ଯାଇଥିଲା । ଗୋଟିଏ ଗୋଷ୍ଠୀ ଇନ୍ଦିରା ଗାନ୍ଧୀଙ୍କ ନେତୃତ୍ୱରେ ଶାସକ କଂଗ୍ରେସ, ଅନ୍ୟ ଏକ ଗୋଷ୍ଠୀ ନିଜଲିଙ୍ଗାପାଙ୍କ ନେତୃତ୍ୱରେ ସଂଗଠନ କଂଗ୍ରେସ ଗଠିତ ହୋଇଥିଲା । ୧୯୭୦ ଏପ୍ରିଲ ୬ ତାରିଖରେ ବିଜୁ ପଟ୍ଟନାୟକ ଜାତୀୟ କଂଗ୍ରେସରୁ ଅଲଗା ହୋଇ ପ୍ରଦେଶ କଂଗ୍ରେସର ବହୁ ସଭ୍ୟଙ୍କୁ ନେଇ ଉତ୍କଳ କଂଗ୍ରେସ ଗଠନ କରିଥିଲେ । ୧୯୭୧ ମଧ୍ୟବର୍ତ୍ତୀକାଳୀନ ନିର୍ବାଚନରେ କଂଗ୍ରେସ ଏକକ ସଂଖ୍ୟାଗରିଷ୍ଠ ଦଳଭାବରେ ନିର୍ବାଚିତ ହେଲେ ମଧ୍ୟ ମନ୍ତ୍ରିମଣ୍ଡଳ ଗଠନ କରିବାକୁ ସମର୍ଥ ହୋଇ ନଥିଲା । ତେଣୁ ବିଶ୍ୱନାଥ ଦାସଙ୍କ ନେତୃତ୍ୱରେ ସ୍ୱତନ୍ତ୍ର-ଉତ୍କଳ କଂଗ୍ରେସ-ଝାଡ଼ଖଣ୍ଡ ଚତୁର୍ଥ ମିଳିତ ମନ୍ତ୍ରିମଣ୍ଡଳ ଗଠିତ ହୋଇଥିଲା । ଏହି ମନ୍ତ୍ରିମଣ୍ଡଳ ଦଶମାସ ପର୍ଯ୍ୟନ୍ତ ସ୍ଥାୟୀ ହୋଇଥିଲା ।

୧୯୭୩ ଜାନୁଆରୀ ୨୬ ତାରିଖରେ ଉତ୍କଳ କଂଗ୍ରେସ, ସ୍ୱତନ୍ତ୍ର ଦଳ, ଜନକଂଗ୍ରେସ ଓ କେତେକ ସ୍ୱାଧୀନ ସଭ୍ୟ ମିଶି ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ ପ୍ରଗତି ଦଳ ଗଠନ କରିଥିଲେ । ବ୍ୟାପକ ଦଳ ବଦଳ ଫଳରେ ମାର୍ଚ୍ଚ ୧ ତାରିଖରେ ମିଳିତ ମନ୍ତ୍ରିମଣ୍ଡଳ ଇସ୍ତଫା ଦେଇଥିଲେ । ପ୍ରଗତି ଦଳର ବିଧାୟକ ସଂଖ୍ୟା ୭୨ ବୋଲି ଦାବି କରାଗଲେ ମଧ୍ୟ ରାଜ୍ୟପାଳ ଜଟି ପ୍ରଗତି ଦଳକୁ ମନ୍ତ୍ରିମଣ୍ଡଳ ଗଠନ ପାଇଁ ସୁଯୋଗ ଦେଇ ନଥିଲେ ।

୧୯୭୫ ଜୁନ ମାସରେ ଜରୁରୀ କାଳୀନ ପରିସ୍ଥିତି ଜାରି ହେବା ପୂର୍ବରୁ ଉତ୍କଳ କଂଗ୍ରେସ ଚରଣ ସିଂହଙ୍କ ନେତୃତ୍ୱରେ ଗଠିତ ଭାରତୀୟ ଲୋକଦଳରେ ମିଶି ଯାଇଥିଲା । ଏହିଠାରୁ ଭାରତର ରାଜନୈତିକ ଦଳ ମଧ୍ୟରେ ସନ୍ତୁଳନ ଆରମ୍ଭ ହୋଇଥିଲା । ୧୯୭୪ରେ ବିଜୁବାବୁ ଜୟପ୍ରକାଶ ନାରାୟଣଙ୍କ ନେତୃତ୍ୱରେ ଗଠିତ ଲୋକ ସଂଘର୍ଷ ସମିତିରେ ରହି ଇନ୍ଦିରା ଗାନ୍ଧୀଙ୍କ ବିରୁଦ୍ଧରେ ଆନ୍ଦୋଳନ ଚଳାଇଥିଲେ ।

୧୯୭୭ ମସିହାରେ ଜରୁରୀକାଳୀନ ପରିସ୍ଥିତି କୋହଳ ହେବା ପରେ ଜାତୀୟ ସ୍ତରରେ ସଂଗଠନ କଂଗ୍ରେସ, ଭାରତୀୟ ଲୋକଦଳ, ଜନସଂଘ ଓ ସୋସାଲିଷ୍ଟ ପାର୍ଟି ମିଶି ଜନତା ଦଳ ଗଠନ କରିଥିଲେ । ଓଡ଼ିଶାର ସମସ୍ତ ଅଣ କମ୍ୟୁନିଷ୍ଟ ବିରୋଧୀ ଦଳକୁ ନେଇ ବିଜୁବାବୁଙ୍କ ନେତୃତ୍ୱରେ ଜନତା ଦଳ ଗଠିତ ହୋଇଥିଲା ।

୧୯୭୭ ମାର୍ଚ୍ଚ ମାସରେ ଅନୁଷ୍ଠିତ ଲୋକସଭା ଓ ଓଡ଼ିଶା ବିଧାନ ସଭା ନିର୍ବାଚନରେ ଜନତା ଦଳ ୨୧ଟି ଲୋକସଭା ଆସନରୁ ୧୫ଟି ଏବଂ ବିଧାନସଭାର ୧୪୭ଟି ଆସନ ମଧ୍ୟରୁ ୧୧୦ଟି ଆସନ ହାସଲ କରିଥିଲା । କଂଗ୍ରେସ ମାତ୍ର ୨୬ଟି ଆସନରେ ଜୟଲାଭ କରିଥିଲା । ବିଜୁ ପଟ୍ଟନାୟକ କେନ୍ଦ୍ର ଜନତା ମନ୍ତ୍ରିମଣ୍ଡଳରେ କ୍ୟାବିନେଟ ମନ୍ତ୍ରୀ ଭାବରେ ରହିଥିଲେ । ଜୁନ ୨୬ ତାରିଖରେ ନୀଳମଣି ରାଉତରାୟଙ୍କ ମୁଖ୍ୟମନ୍ତ୍ରୀତ୍ୱରେ ଓଡ଼ିଶାରେ ଜନତା ଦଳ ମନ୍ତ୍ରିମଣ୍ଡଳ ଗଠିତ ହୋଇଥିଲା ।

ଦଶମ ବିଧାନସଭା ନିର୍ବାଚନ ୧୯୯୦ ଫେବୃଆରୀ ମାସରେ ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ ଅନୁଷ୍ଠିତ ହୋଇ ଜନତା ଦଳ ବିପୁଳ ସଂଖ୍ୟା ଗରିଷ୍ଠତା ହାସଲ କରିଥିଲା । ଏହି ନିର୍ବାଚନରେ ଜନତା ଦଳ ୧୩୯ଟି ଆସନରେ ପ୍ରତିଦ୍ୱନ୍ଦିତା କରି ୧୨୩ଟିରେ ଜୟଯୁକ୍ତ ହୋଇଥିଲା । ୧୯୯୦ ମାର୍ଚ୍ଚ ୫ ତାରିଖରେ ବିଜୁବାବୁ ମୁଖ୍ୟମନ୍ତ୍ରୀ ଭାବରେ ଶପଥ ଗ୍ରହଣ କରିଥିଲେ । ତାଙ୍କ ମନ୍ତ୍ରିମଣ୍ଡଳ ପୂର୍ଣ୍ଣ ପାଞ୍ଚ ବର୍ଷ ୧୯୯୫ ମାର୍ଚ୍ଚ ପର୍ଯ୍ୟନ୍ତ ଶାସନରେ ରହି ରାଜ୍ୟରେ ବେକାରୀ ଓ ଦାରିଦ୍ର୍ୟ ଦୂରୀକରଣ ପାଇଁ ବହୁ ବୈପ୍ଲବିକ ପଦକ୍ଷେପ ଗ୍ରହଣ କରିଥିଲେ । ଦୀର୍ଘ ୧୩ ବର୍ଷ ପରେ ଶାସନ ବିକେନ୍ଦ୍ରୀକରଣ ପାଇଁ ପଞ୍ଚାୟତ ଓ ମ୍ୟୁନିସପାଲିଟି ନିର୍ବାଚନ ଅନୁଷ୍ଠିତ ହୋଇଥିଲା ଏବଂ ଏଥିରେ ମହିଳାମାନଙ୍କ ପାଇଁ ସ୍ଥାନ ସଂରକ୍ଷଣ କରାଯାଇଥିଲା । ସରକାରୀ ଚାକିରିରେ ମହିଳାଙ୍କ ପାଇଁ ୩୦ ପ୍ରତିଶତ ସ୍ଥାନ ସଂରକ୍ଷିତ ହୋଇଥିଲା । ମହିଳାଙ୍କ ନିଯୁକ୍ତି କ୍ଷେତ୍ରରେ ବୟସ ସୀମା କୋହଳ କରାଯାଇଥିଲା । ଶ୍ରମିକମାନଙ୍କ ଦୈନିକ ମଜୁରୀ ୨୫ ଟଙ୍କା ଧାର୍ଯ୍ୟ ହୋଇଥିଲା । ବୃଦ୍ଧ, ଅକ୍ଷମ ଓ ବିଧବା ଭତ୍ତା ୧୦୦ ଟଙ୍କାକୁ ବୃଦ୍ଧି କରାଯାଇଥିଲା । କ୍ଷୁଦ୍ର ଓ ନାମମାତ୍ର ଚାଷୀଙ୍କୁ ଆର୍ଥିକ ସାହାଯ୍ୟ ଯୋଜନା, ଗ୍ରାମାଞ୍ଚଳ ଦରିଦ୍ର ଲୋକଙ୍କ ବାସଗୃହ ନିର୍ମାଣ ପାଇଁ କଳିଙ୍ଗ କୁଟୀର ଯୋଜନା ପ୍ରବର୍ତ୍ତନ କରାଯାଇଥିଲା । ବିଧବା ପେନସନରମାନଙ୍କ ବୟସ ସୀମା ଉଚ୍ଛେଦ ହୋଇଥିଲା । ରାଜ୍ୟରେ ମହିଳା ବିକାଶ ନିଗମ, ମହିଳା ବ୍ୟାଙ୍କ, ରାଜ୍ୟ ମହିଳା କମିଶନ ପ୍ରତିଷ୍ଠା କରାଯାଇଥିଲା । ଉଚ୍ଚସ୍ତରରେ ଦୁର୍ନୀତି ବିଲୋପ ପାଇଁ ସ୍ୱତନ୍ତ୍ର କୋର୍ଟ ସ୍ଥାପନ କରାଯାଇଥିଲା । ଅସାଧୁ ପନ୍ଥାରେ ଅର୍ଜିତ ସଂପତ୍ତି ଜବତ ପାଇଁ ଆଇନ ପ୍ରଣୟନ ହୋଇଥିଲା । ଦକ୍ଷ ପ୍ରଶାସନ ପାଇଁ ଜିଲ୍ଲା ପୁନର୍ଗଠନ କରାଯାଇ ରାଜ୍ୟରେ ଜିଲ୍ଲା ସଂଖ୍ୟା ୩୦କୁ ବୃଦ୍ଧି କରାଯାଇଥିଲା । ପ୍ରାଥମିକ ଶିକ୍ଷାକୁ ସାର୍ବଜନୀନକରଣ କରାଯାଇଥିଲା । ୬ଟି ଜିଲ୍ଲାରେ ସଂପୂର୍ଣ୍ଣ ସାକ୍ଷରତା ଯୋଜନା ପ୍ରବର୍ତ୍ତନ କରାଯାଇଥିଲା । ଶିକ୍ଷାନୁଷ୍ଠାନରେ ତଫସିଲଭୁକ୍ତ ଜାତି ଓ ଉପଜାତିର ଛାତ୍ରଙ୍କୁ ଛାତ୍ର ବୃତ୍ତି ଦିଆଯାଇଥିଲା । ବୃଦ୍ଧ, ଅକ୍ଷମ ଓ ବିଧବା ଭତ୍ତା ରୋଗୀମାନଙ୍କୁ ବ୍ଲକ୍ ସ୍ତରରେ ରିହାତି ହାରରେ ଚାଉଳ ଓ ଗହମ ଯୋଗାଇ ଦିଆଯାଇଥିଲା । ବିବାହ ଉତ୍ସବରେ ସର୍ବାଧିକ ଖର୍ଚ୍ଚ ସୀମା ୨୫ ହଜାର ଟଙ୍କା ନିର୍ଦ୍ଧାରିତ ହୋଇଥିଲା । ଦୁଇଟିରୁ ଅଧିକ ସନ୍ତାନ ଥିବା ବ୍ୟକ୍ତିଙ୍କୁ ସରକାରୀ ଚାକିରି ଓ ନିର୍ବାଚନରେ ଅଂଶଗ୍ରହଣରୁ ବଂଚିତ କରିବାପାଇଁ ଆଇନ ପ୍ରଣୟନ କରାଯାଇଥିଲା । ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ଚାଉଳ କିଲୋ ଦୁଇ ଟଙ୍କା ଦରରେ ଯୋଗାଇ ଦେବାର ବ୍ୟବସ୍ଥା କରାଯାଇଥିଲା । ପ୍ରତ୍ୟେକ ମ୍ୟୁନିସିପାଲିଟିର ଅଧ୍ୟକ୍ଷ ବା ଉପାଧ୍ୟକ୍ଷ ଭାବରେ ଜଣେ ମହିଳା ଏବଂ ଗ୍ରାମ ପଞ୍ଚାୟତରେ ସରପଞ୍ଚ ବନ୍ୟାୟବ ସରପଞ୍ଚ ଭାବରେ ଜଣେ ମହିଳା ରହିବେ ବୋଲି ବ୍ୟବସ୍ଥା କରାଯାଇଥିଲା । ଯାଜପୁରଠାରେ ଦ୍ୱିତୀୟ ବୃହତ୍ ଇସ୍ପାତ୍ କାରଖାନା, ଦଇତାରୀଠାରେ ଆଉ ଏକ ଇସ୍ପାତ କାରଖାନା, ପାରାଦ୍ୱୀପଠାରେ ତୈଳ ବିଶୋଧନ କାରଖାନା ପ୍ରତିଷ୍ଠା ପାଇଁ ପଦକ୍ଷେପ ଗ୍ରହଣ କରାଯାଇଥିଲା ।

ଦୀର୍ଘ ଅର୍ଦ୍ଧ ଶତାବ୍ଦୀରୁ ଉର୍ଦ୍ଧ୍ୱକାଳ ବିଜୁବାବୁ ଓଡ଼ିଶାର ଶାସନକୁ ନିୟନ୍ତ୍ରଣ କରି ଆସୁଥିଲେ । ଜାତୀୟ ରାଜନୀତିକୁ ପ୍ରଭାବିତ କରୁଥିଲେ । ସବୁ କ୍ଷେତ୍ରରେ ଓଡ଼ିଶାକୁ ସମୃଦ୍ଧିଶାଳୀ କରିବା ଥିଲା ତାଙ୍କ ଜୀବନର ଏକମାତ୍ର ଲକ୍ଷ୍ୟ ଓ ବ୍ରତ । କଳିଙ୍ଗର ଅତୀତ ଗୌରବ ତାଙ୍କର ସ୍ମୃତିପଟରେ ସବୁବେଳେ ଉଜ୍ଜୀବିତ ରହିଥିଲା । ସେଥିପାଇଁ ସେ ନିଜକୁ କଳିଙ୍ଗ ସମ୍ରାଟ ଖାରବେଳ ବୋଲାଇବାକୁ ସଂକୋଚ କରୁନଥିଲେ । ସେ ନିଜର ଯେତେ ସବୁ ସଂସ୍ଥା ଗଢ଼ିଥିଲେ, ସବୁଥିରେ କଳିଙ୍ଗର ନାମ ସଂଯୋଗ କରିଥିଲେ– କଳିଙ୍ଗ ଟ୍ୟୁବ୍‌ସ, କଳିଙ୍ଗ ଏୟାରଲାଇନ୍ସ, କଳିଙ୍ଗ ଆଇରନ ୱାର୍କସ, କଳିଙ୍ଗ ପୁରସ୍କାର, କଳିଙ୍ଗ ରେଫ୍ରିଜରେଟର, କଳିଙ୍ଗ ସମ୍ବାଦପତ୍ର, କଳିଙ୍ଗ ଫାଉଣ୍ଡେସନ ଇତ୍ୟାଦି । ଚଉଦ୍ୱାରରେ ସେ ଓଡ଼ିଶା ଲୁଗାକଳ ସ୍ଥାପନ କରିଥିଲେ । ସେ ଥିଲେ ଓଡ଼ିଆ ଜାତିର ସ୍ୱାଭିମାନର ପ୍ରତୀକ । ସେ ହିଁ ଓଡ଼ିଶାକୁ ଆନ୍ତର୍ଜାତିକ ସ୍ତରରେ ପରିଚିତ ଓ ପ୍ରତିଷ୍ଠିତ କରିଯାଇଛନ୍ତି ।

କେନ୍ଦ୍ରରେ ସାମ୍ମୁଖ୍ୟ ସରକାର ଗଠନରେ ସେ ଥିଲେ କର୍ଣ୍ଣଧାର । ବିଜୁବାବୁଙ୍କ ସମଗ୍ର ଜୀବନ ଥିଲା ସଂଘର୍ଷମୟ । ଜନଗଣଙ୍କ ପାଇଁ ଉତ୍ସର୍ଗୀକୃତ । ସେ କେବେ ପରାଜୟ ସ୍ୱୀକାର କରିନାହାନ୍ତି । ଆତ୍ମାଭିମାନ ଓ ଆତ୍ମବିଶ୍ୱାସ ହିଁ ତାଙ୍କୁ ସବୁବେଳେ ଆଗକୁ ମାଡ଼ି ଯିବା ପାଇଁ ଶକ୍ତି ଦେଇଛି । ସେ ଥିଲେ ବିପୁଳ କର୍ମ

ପ୍ରେରଣାର ଉତ୍ସ । ଏକଦା ବିଶ୍ୱର ୧୬ ଜଣ କୋଟିପତିଙ୍କ ଭିତରୁ ସେ ଥିଲେ ଜଣେ । କିନ୍ତୁ ଦେଶ ପାଇଁ ସେ ନିଜର ସବୁ କିଛି ଦାନ କରିଯାଇଛନ୍ତି । ଖର୍ଚ୍ଚରେ ସେ ଥିଲେ ବେପରୁଆ । ନିଜସ୍ୱ ବିଚାରବୋଧରେ ସେ ଥିଲେ ଅଟଳ । ଅନ୍ୟର କଥାରେ ପ୍ରଭାବିତ ହେବା ଲୋକ ନଥିଲେ । ଯାହା ଉଚିତ ଭାବୁଥିଲେ, କରୁଥିଲେ । ଅନ୍ୟାୟ ଅନୀତିର ସେ କଠୋର ସମାଲୋଚନା କରୁଥିଲେ । ସ୍ପଷ୍ଟବାଦିତା ଥିଲା ତାଙ୍କର ସ୍ୱଭାବସିଦ୍ଧ ଗୁଣ । ନିଜ ଦଳର ଅପକର୍ମକୁ ସେ କେବେ ଘୋଡାଉ ନଥିଲେ । ପ୍ରଶାସନ କ୍ଷେତ୍ରରେ ସଂସ୍କାର ଓ ଦକ୍ଷତା ବୃଦ୍ଧି ପାଇଁ ସେ ସତତ ଉଦ୍ୟମ କରୁଥିଲେ । ସରକାରୀ କଳରେ ଅପବ୍ୟୟ ରୋକିବା ପାଇଁ ବହୁ କଟକଣା କରିଥିଲେ । ଛୁଟି ଦିନରେ ସରକାରୀ ଗାଡ଼ି ବ୍ୟବହାର ମନା କରି ଦେଇଥିଲେ । ନିଜେ ରିକ୍ସା ଓ ସାଇକେଲରେ ସଚିବାଳୟ ଆସିବାକୁ ସଂକୋଚ କରୁନଥିଲେ । ସେ ଥିଲେ ଯେତିକି ଜିଦ୍‌ଖୋର, ସେତିକି ଖାମଖିଆଲି । ଦୁର୍ନୀତିଗ୍ରସ୍ତ ସରକାରୀ କର୍ମଚାରୀଙ୍କୁ ମାଡ଼ ଦେବାପାଇଁ ଲୋକମାନଙ୍କୁ ଉତ୍ସାହିତ କରି ପ୍ରଶାସନରେ ଚମକ ସୃଷ୍ଟି କରିଥିଲେ । ବାହାରକୁ ଯେତେ କଠୋର ଜଣାପଡ଼ିଲେ ମଧ୍ୟ ହୃଦୟଟା ଥିଲା ତାଙ୍କର ଅତି କୋମଳ, ସମ୍ବେଦନଶୀଳ । ବିଜୁବାବୁଙ୍କ ଜୀବନ ଯେତିକି ଆଭିଜାତ୍ୟପୂର୍ଣ୍ଣ, ସେତିକି ସରଳ ଓ ନିରାଡମ୍ବର । ସବୁ ପରିସ୍ଥିତି ସହିତ ଖାପ ଖୁଆଇ ଚାଲିବା ଏବଂ ସବୁ ଶ୍ରେଣୀର ଲୋକଙ୍କ ସଂଗେ ମିଶି ଚଳିବା ଥିଲା ତାଙ୍କ ଜୀବନର ଆଦର୍ଶ । ତେଣୁ ଧନୀ-ଦରିଦ୍ର, ଶିଶୁ, ବୃଦ୍ଧ ସମସ୍ତଙ୍କର ସେ ଥିଲେ ଅତି ଆପଣାର । ଦାମ୍ଭିକତା ଥିଲା ତାଙ୍କର ସହଜାତ ପ୍ରକୃତି । ଏଥିରେ କିନ୍ତୁ ଅହମିକା ବା ଆତ୍ମବଡ଼ିମା ନଥିଲା । ଥିଲା ଗଭୀର ଆତ୍ମବିଶ୍ୱାସ । ସବୁ କ୍ଷେତ୍ରରେ ନିଜକୁ ସର୍ବମୟ କର୍ତ୍ତା ମନେ କରିବାରେ ତାଙ୍କର ଟିକେ ହେଲେ ସଂକୋଚ ନଥିଲା । ପରିହାସରେ ସେ କହୁଥିଲେ, ମୁଁ ହେଉଛି ଦଳ, ମୁଁ ସରକାର । ମୋ ଦଳର ପ୍ରଚାର ପାଇଁ ଅନ୍ୟ ନେତାର କୌଣସି ଆବଶ୍ୟକତା ନାହିଁ । ବିରୋଧୀ ଦଳ ପ୍ରତି ତାଙ୍କଠାରେ ଅହନ୍ତା ବା ଅସୂୟାଭାବ ନଥିଲା ।

ଦୀର୍ଘ ରାଜନୀତିକ ଜୀବନରେ ବିଜୁବାବୁଙ୍କର ବହୁ ଉତ୍ଥାନ-ପତନ ଘଟିଛି । କେତେ ସରକାର ଗଢ଼ିଛନ୍ତି, ଭାଙ୍ଗିଛନ୍ତି । ସଫଳତାରେ ଉଲ୍ଲସିତ ହୋଇନାହାନ୍ତି, ବିଫଳତାରେ ଭାଙ୍ଗି ପଡ଼ିନାହାନ୍ତି । ଜୟ-ପରାଜୟ, ନିନ୍ଦା-ପ୍ରଶଂସାକୁ ସେ ସମାନ ଭାବରେ ଗ୍ରହଣ କରି ଆସିଥିଲେ । ଜୀବନକାଳ ମଧ୍ୟରେ ସେ ଯେତିକି ଢେଲା ମାଡ଼ ଖାଇଛନ୍ତି, ତାଠୁ ଅଧିକ ଫୁଲମାଳ ପାଇଛନ୍ତି । ଏହା ହିଁ ତାଙ୍କର ବୈପ୍ଳବିକ ଜୀବନର ସାର୍ଥକତା । ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଶାର ପ୍ରଥମ ମୁଖ୍ୟମନ୍ତ୍ରୀ ଡକ୍ଟର ମହତାବ ନବ ଉତ୍କଳ ନିର୍ମାଣର ଯେଉଁ ଭିତ୍ତି ସ୍ଥାପନ କରିଥିଲେ, ତାଙ୍କର ପଟ୍ଟଶିଷ୍ୟ ବିଜୁ ପଟ୍ଟନାୟକ ଦୁଇଥର ମୁଖ୍ୟମନ୍ତ୍ରୀ ହୋଇ ତାକୁ ପୂର୍ଣ୍ଣାଙ୍ଗ କରିବାରେ ସମର୍ଥ ହୋଇଥିଲେ । ସେଥିପାଇଁ ଆଧୁନିକ ଓଡ଼ିଶାର ଅନ୍ୟତମ ନିର୍ମାତା ଭାବରେ ବିଜୁବାବୁ ଇତିହାସରେ ସ୍ମରଣୀୟ ହୋଇ ରହିବେ ।

ପିଠାପୁର
କଟକ- ୭୫୩୦୦୧



# ପଞ୍ଚାୟତିରାଜ ଓ ବିଜୁବାବୁ

ଅଭୟ ଦ୍ୱିବେଦୀ

ପ୍ରାକ୍ ଐତିହାସିକ କାଳରୁ ଭାରତରେ କ୍ଷମତା ବିକେନ୍ଦ୍ରୀକରଣର ପରମ୍ପରା ଅତୀବ ସମୃଦ୍ଧ । ବୈଦିକ ଯୁଗରେ ସ୍ୱୟଂଶାସିତ ଗ୍ରାମଗୁଡ଼ିକର ସାମଗ୍ରିକ ଦାୟିତ୍ୱ 'ସଭା' ଉପରେ ନ୍ୟସ୍ତ ଥିଲା । ଏହି 'ସଭା' ଗ୍ରାମର ଆର୍ଥିକ ଉନ୍ନତି, ଗ୍ରାମବାସୀଙ୍କ ମଧ୍ୟରେ ସାମାଜିକ ସୁସଂପର୍କ ପ୍ରତିଷ୍ଠା ଏବଂ ଆବଶ୍ୟକସ୍ଥଳେ ନ୍ୟାୟପାଳିକାର ଦାୟିତ୍ୱ ତୁଲାଉଥିଲା । ସମୟକ୍ରମେ ଏହା 'ପଞ୍ଚାୟତ' ନାମରେ ପରିଚିତ ହେଲା । ପ୍ରଥମ ପର୍ଯ୍ୟାୟରେ ଗ୍ରାମର ପଞ୍ଚଜଣ ପୁରୁଖା ବ୍ୟକ୍ତିଙ୍କୁ ନେଇ ପଞ୍ଚାୟତ ଗଠିତ ହେଉଥିଲେ ହେଁ, ସମୟକ୍ରମେ ନିର୍ବାଚିତ ପ୍ରତିନିଧିମାନେ ସେ ସ୍ଥାନ ଗ୍ରହଣ କଲେ । କ୍ରମଶଃ ପଞ୍ଚାୟତର କାର୍ଯ୍ୟ ପରିସର ବୃଦ୍ଧି ପାଇବାକୁ ଲାଗିଲା । ଜମିର ସୁଷମ ବଣ୍ଟନ ଏବଂ ଗ୍ରାମବାସୀଙ୍କଠାରୁ ଟ୍ୟାକ୍ସ ଆଦାୟ କରି ସରକାରଙ୍କୁ ପୈଠ କରିବାରେ ପଞ୍ଚାୟତ ପ୍ରମୁଖ ଭୂମିକା ଗ୍ରହଣ କଲା । କିନ୍ତୁ ମୋଗଲ ଶାସନ କାଳରେ ପଞ୍ଚାୟତି ବ୍ୟବସ୍ଥାର ଅବକ୍ଷୟ ଆରମ୍ଭ ହେଲା । ସରକାର ଏବଂ ଗ୍ରାମବାସୀଙ୍କ ମଧ୍ୟରେ 'ଜମିଦାର' ଗୋଷ୍ଠୀର ସୃଷ୍ଟି ହେଲା । ସେମାନଙ୍କ ଦାୟିତ୍ୱରେ ଗ୍ରାମଗୁଡ଼ିକୁ ଅର୍ପଣ କରାଗଲା ।

ଆଦ୍ୟ ବ୍ରିଟିଶ ଶାସନ କାଳରେ ପଞ୍ଚାୟତି ବ୍ୟବସ୍ଥାକୁ ସଂପୂର୍ଣ୍ଣ ରୂପେ ଧ୍ୱଂସ କରି ଦିଆଗଲା । ଯେଉଁ ସଂସ୍ଥା ସେମାନଙ୍କ ସକାଶେ ଅର୍ଥ ଆଦାୟର ପଥ ନିର୍ଦ୍ଧାରଣ କରିପାରିବ, ସେମାନେ ସେହିଭଳି ଗୋଟିଏ ନିୟନ୍ତ୍ରିତ ଗୋଷ୍ଠୀ ସୃଷ୍ଟି କରିବା ପାଇଁ ଆଗ୍ରହୀ ଥିଲେ । କିନ୍ତୁ ୧୮୫୭ ମସିହା ପ୍ରଥମ ସ୍ୱାଧୀନତା ସଂଗ୍ରାମ ପରେ ଏହାର ରୂପରେଖରେ ପରିବର୍ତ୍ତନ ଆସିଲା । ୧୮୭୦ ମସିହାରେ ଲର୍ଡ଼ ମାୟୋ କ୍ଷମତା ବିକେନ୍ଦ୍ରୀକରଣ ସଂପର୍କରେ ପ୍ରଥମେ ଚିନ୍ତା କରିଥିଲେ ହେଁ ଲର୍ଡ଼ ରିପନଙ୍କ ୧୮୮୨ ମସିହା ମେ ୧୨ ତାରିଖ ପ୍ରସ୍ତାବ ସ୍ୱାୟତ୍ତ ଶାସନ କ୍ଷେତ୍ରରେ ଯୁଗାନ୍ତକାରୀ ପଦକ୍ଷେପ । କିନ୍ତୁ ଗ୍ରାମାଞ୍ଚଳ ଏହାର ପରିସରରୁ ସଂପୂର୍ଣ୍ଣ ବାଦ ପଡ଼ିଥିଲା । ୧୯୦୭ ମସିହାରେ ସି.ଇ.ଏଚ୍. ହବ୍ୟୁସଙ୍କ ଅଧ୍ୟକ୍ଷତାରେ ଗଠିତ 'କ୍ଷମତା ବିକେନ୍ଦ୍ରୀକରଣ କମିଶନ' ପ୍ରଥମ ଥର ପାଇଁ ଗ୍ରାମାଞ୍ଚଳରେ ପଞ୍ଚାୟତିରାଜ ବ୍ୟବସ୍ଥାର ଆବଶ୍ୟକତା ଅନୁଭବ କରିଥିଲେ । କ୍ଷମତା ବିକେନ୍ଦ୍ରୀକରଣ ଓ ଗ୍ରାମାଞ୍ଚଳରେ ଶାସନର ପ୍ରତ୍ୟକ୍ଷ ପ୍ରଭାବ ନିମନ୍ତେ ଗ୍ରାମପଞ୍ଚାୟତ ଗଠନ ସକାଶେ କମିଶନ ସୁପାରିଶ କରିଥିଲେ । କିନ୍ତୁ ୧୯୧୯ ମସିହାର ମଣ୍ଟେଗୁ ଚେମସ୍‌ଫୋର୍ଡ଼ ସଂସ୍କାର ପଞ୍ଚାୟତିରାଜ ବ୍ୟବସ୍ଥାକୁ ଗ୍ରାମାଞ୍ଚଳରେ ପ୍ରତିଷ୍ଠିତ କରାଇପାରିଥିଲା । ଆର୍ଥିକ ସଙ୍କଟ ଏବଂ ବ୍ୟବସ୍ଥାଗତ ବିଶୃଙ୍ଖଳା ହେତୁ ପଞ୍ଚାୟତିରାଜ ବ୍ୟବସ୍ଥା ସଂପୂର୍ଣ୍ଣ ଗଣତନ୍ତ୍ରଧର୍ମୀ ନହୋଇପାରିଥିଲେ ମଧ୍ୟ ବହୁ ରାଜ୍ୟରେ ଗ୍ରାମପଞ୍ଚାୟତ ଗଠିତ ହୋଇଥିଲା । ୧୯୨୫ ମସିହା ବେଳକୁ ୮ଟି ରାଜ୍ୟରେ ପଞ୍ଚାୟତିରାଜ ଆଇନ ପ୍ରଣୟନ ହୋଇସାରିଥିଲା । ୧୯୩୫ ମସିହା 'ଗଭର୍ଣ୍ଣମେଣ୍ଟ ଅଫ୍ ଇଣ୍ଡିଆ ଆକ୍ଟ' ପଞ୍ଚାୟତିରାଜ ବ୍ୟବସ୍ଥାର ବିକାଶରେ ସହାୟକ ହୋଇଥିଲା । ଗଣତାନ୍ତ୍ରିକ ପଦ୍ଧତିରେ ନିର୍ବାଚିତ ଲୋକପ୍ରିୟ ସରକାର ସ୍ୱାୟତ୍ତ ଶାସନ ସକାଶେ ବିଭିନ୍ନ ଆଇନ ପ୍ରଣୟନ କଲେ । ଅବଶ୍ୟ ବହୁକ୍ଷେତ୍ରରେ ଆଶାନୁରୂପ ସଫଳତା ମିଳିପାରି ନଥିଲା । କିନ୍ତୁ ତୃଣମୂଳସ୍ତରରେ ସମସ୍ତେ ସ୍ୱାୟତ୍ତ ଶାସନର ସ୍ୱାଦ ଅନୁଭବ କରିଥିଲେ ।

୧୯୨୦ ମସିହାରୁ ମହାତ୍ମା ଗାନ୍ଧୀ ଥିଲେ ସ୍ୱାଧୀନତା ଆନ୍ଦୋଳନର ପୁରୋଧା । ସେ ଥିଲେ ଗ୍ରାମ୍ୟ ସ୍ୱରାଜର ପୂର୍ଣ୍ଣ ସମର୍ଥକ । ମହାତ୍ମା ଗାନ୍ଧୀ ଚାହୁଁଥିଲେ- ଗ୍ରାମାଞ୍ଚଳରେ ଗଣତନ୍ତ୍ର ପ୍ରତିଷ୍ଠା ହେଉ ଏବଂ ଗ୍ରାମପଞ୍ଚାୟତ ଗ୍ରାମ୍ୟ-ଉତ୍ଥାନର ମୁଖ୍ୟ ଭୂମିକା ଗ୍ରହଣ କରୁ । କିନ୍ତୁ କଂଗ୍ରେସର ଅନ୍ୟ ବହୁ ନେତା ଏହାକୁ ସମର୍ଥନ କରୁ ନଥିଲେ । ସେମାନଙ୍କ ମଧ୍ୟରେ ପ୍ରମୁଖ ଥିଲେ ବି.ଆର୍.

ଆମ୍ବେଦକର । ସେମାନଙ୍କର ଯୁକ୍ତି ଥିଲା- ଗ୍ରାମ ହେଉଛି ନିର୍ଯାତିତ ଭାରତର ସାଙ୍କେତିକ ରୂପ ଯାହା ଜାତି ଓ ବର୍ଣ୍ଣରେ ବହୁଧା ବିଭକ୍ତ । ସମ୍ବିଧାନ ପ୍ରଣୟନ ସମୟରେ ଗାନ୍ଧିଜୀଙ୍କ ଗ୍ରାମ୍ୟ-ସ୍ୱରାଜ ସମସ୍ତଙ୍କ ମନରୁ ପାଶୋର ହୋଇଗଲା । ଫଳରେ ପଞ୍ଚାୟତିରାଜ ବ୍ୟବସ୍ଥାକୁ ଡିରେକ୍‌ଟିଭ ପ୍ରିନସ୍‌ପଲସ୍ ଅଫ୍ ଷ୍ଟେଟ ପଲିସି ଧାରା ୪୦ରେ ସ୍ଥାନିତ କରାଗଲା । ଏଥିରେ କୁହାଗଲା- ପଞ୍ଚାୟତିରାଜ ବ୍ୟବସ୍ଥାକୁ କାର୍ଯ୍ୟକାରୀ କରିବା ସକାଶେ ରାଜ୍ୟମାନେ ବିହିତ ପଦକ୍ଷେପ ମାଧ୍ୟମରେ ସମସ୍ତ କ୍ଷମତା ଓ ଅଧିକାର ପ୍ରଦାନ କରିବେ । କିନ୍ତୁ ବାସ୍ତବରେ ୧୯୯୨ ମସିହା ପର୍ଯ୍ୟନ୍ତ ପଞ୍ଚାୟତିରାଜ ବ୍ୟବସ୍ଥାକୁ କେନ୍ଦ୍ର ସ୍ତରରେ ସମସ୍ତେ ପାଶୋରି ଯାଇଥିଲେ ।

୧୯୩୬ ମସିହାରେ ଓଡ଼ିଶା ସ୍ୱତନ୍ତ୍ର ରାଜ୍ୟର ମାନ୍ୟତା ଅର୍ଜନ କଲା । ପୂର୍ବରୁ ଏହା ବଙ୍ଗ, ବିହାର, ମାଡ୍ରାସ ଏବଂ ମଧ୍ୟପ୍ରଦେଶର ଅଂଶ ଭାବେ ବିବେଚିତ ହେଉଥିଲା । ୧୯୩୬ ମସିହାରେ ଗଂଜାମ ଏବଂ କୋରାପୁଟ ଓ ୧୯୪୯ ମସିହାରେ ମୟୂରଭଞ୍ଜ ଓଡ଼ିଶା ସହିତ ମିଶିଲା । ତେଣୁ ସ୍ୱାୟତ୍ତ ଶାସନ ନିମନ୍ତେ ରାଜ୍ୟର କୌଣସି ନିର୍ଦ୍ଦିଷ୍ଟ ଆଇନ ନ ଥିଲା । ବିଭିନ୍ନ ରାଜ୍ୟର ଆଇନ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ପ୍ରଚଳିତ ଥିଲା । ଦେଶ ସ୍ୱାଧୀନ ହେବା ପରେ ରାଜ୍ୟରେ 'ଓଡ଼ିଶା ଗ୍ରାମପଞ୍ଚାୟତ ଆଇନ ୧୯୪୮' ପ୍ରଣୀତ ହେଲା । ସମଗ୍ର ଦେଶରେ ଗ୍ରାମପଞ୍ଚାୟତ ଆଇନ ପ୍ରଣୟନରେ ଓଡ଼ିଶା ସର୍ବପ୍ରଥମ । ଏହି ଆଇନ ବଳରେ ଜିଲ୍ଲା ବୋର୍ଡ଼ ଏବଂ ଗ୍ରାମପଞ୍ଚାୟତକୁ ସ୍ୱୀକୃତି ପ୍ରଦାନ କରାଗଲା । ୧୯୫୭ ମସିହା ଜାନୁଆରୀ ମାସରେ କେନ୍ଦ୍ରରେ ବଳବନ୍ତ ରାଏ ମେହେଟ୍ଟା କମିଟି ଗଠିତ ହେଲା ଏବଂ ସେହି ବର୍ଷ ନଭେମ୍ବର ମାସରେ କମିଶନ ରିପୋର୍ଟ ପ୍ରଦାନ କଲେ । ଗ୍ରାମାଞ୍ଚଳର ଆର୍ଥିକ ଓ ସାମାଜିକ ବିକାଶରେ ଜାତୀୟ ଗୋଷ୍ଠୀ ଉନ୍ନୟନ ପ୍ରକଳ୍ପ ଏବଂ ଜାତୀୟ ସଂପ୍ରସାରଣ ସେବା କେତେଦୂର ସହାୟକ ହୋଇଛି, ତାହା ଅନୁଧାନ କରିବା ସହିତ ଗ୍ରାମାଞ୍ଚଳ ବିକାଶ ତ୍ୱରାନ୍ୱିତ କରିବା ସକାଶେ ପରାମର୍ଶ ପ୍ରଦାନ କରିବା ଏହି କମିଟିର ଆଭିମୁଖ୍ୟ ଥିଲା । ଆମ ଦେଶରେ ପଞ୍ଚାୟତିରାଜ ବ୍ୟବସ୍ଥାର ସୁଦୃଢ଼ ଭିତ୍ତିଭୂମି ଏହି କମିଟିର ସୁଚିନ୍ତିତ ପରାମର୍ଶ ଉପରେ ପର୍ଯ୍ୟବସିତ କମିଟିର ପରାମର୍ଶ ଥିଲା ।

୧. ଗ୍ରାମାଞ୍ଚଳର ଦୀର୍ଘସ୍ଥାୟୀ ଏବଂ ନିରନ୍ତର ଉତ୍ଥାନ ସକାଶେ ସମସ୍ତ କାର୍ଯ୍ୟକ୍ରମର ଯୋଜନା ଓ କାର୍ଯ୍ୟକାରିତାରେ ଆଞ୍ଚଳିକ ଲୋକ ପ୍ରତିନିଧିମାନଙ୍କର ସଂପୃକ୍ତି ଏକାନ୍ତ ଆବଶ୍ୟକ । ଏଥିନିମନ୍ତେ ତ୍ରିସ୍ତରୀୟ ପଞ୍ଚାୟତିରାଜ ବ୍ୟବସ୍ଥା- ଗ୍ରାମପଞ୍ଚାୟତ, ପଞ୍ଚାୟତ ସମିତି ଏବଂ ଜିଲ୍ଲା ପରିଷଦ ପ୍ରଚଳିତ ହେବ । ଏହି ତିନୋଟି ସ୍ତର ପରୋକ୍ଷ ନିର୍ବାଚନରେ ପରସ୍ପର ସହିତ ସଂପୃକ୍ତ ରହିବେ ।

୨. ଏଥିସକାଶେ ଗ୍ରାମାଞ୍ଚଳରେ ନିର୍ବାଚିତ ଲୋକ ପ୍ରତିନିଧିମାନଙ୍କୁ ତୁରନ୍ତ ବିଧିସଙ୍ଗତ କ୍ଷମତା, ଅଧିକାର ଏବଂ ସମ୍ବଳ ପ୍ରଦାନ କରାଯିବ ।

୩. କ୍ଷମତା ବିକେନ୍ଦ୍ରୀକରଣର ଏକକ ଭାବେ ପଞ୍ଚାୟତ ସମିତି ବିବେଚିତ ହେବ । କାରଣ ପ୍ରଶାସନିକ ବଳୟର କ୍ଷୁଦ୍ର ପରିସରରେ ସାଧାରଣ ଜନତା ନିଜର ସଂପୃକ୍ତି ଅନୁଭବ କରିପାରିବ ଏବଂ ପରିଚାଳନାର ବୃହତ୍ତର ପରିସର ଦୃଷ୍ଟିରୁ ଯଥେଷ୍ଟ ମିତବ୍ୟୟିତା ଅବଲମ୍ବନ କରି ହେବ ।

୪. ଏହି ଲୋକ ପ୍ରତିନିଧି ସଂସ୍ଥା ଯଥାସମ୍ଭବ ସରକାରୀ ନିୟନ୍ତ୍ରଣରୁ ମୁକ୍ତ ରହିବ ।

୫. ପରୋକ୍ଷ ନିର୍ବାଚନ ପଦ୍ଧତିରେ ଏହି ସଂସ୍ଥାର କାର୍ଯ୍ୟକାଳ ପାଞ୍ଚ ବର୍ଷ ପାଇଁ ସୀମିତ ରହିବ ।

୬. କୃଷି, ଶିକ୍ଷା ଏବଂ ଆନୁଷଙ୍ଗିକ କ୍ଷେତ୍ରର ଉନ୍ନତି ସକାଶେ ଏହା କାର୍ଯ୍ୟ କରିବ ।

୭. ରାସ୍ତା ନିର୍ମାଣ, ଜଳ ଯୋଗାଣ ଆଦି ସେବା ପ୍ରଦାନ କରିବ ।

୮. ଉପର ସ୍ତରରେ ଜିଲ୍ଲା ପରିଷଦ ପରାମର୍ଶଦାତା ଭାବେ କାର୍ଯ୍ୟ କରିବ ।

ବଳବନ୍ତ ରାଏ ମେହେଟ୍ଟା କମିଶନଙ୍କ ପରାମର୍ଶ ଜାତୀୟ ଉନ୍ନୟନ ପରିଷଦରେ ୧୯୫୮ ମସିହାରେ ଗୃହୀତ ହୋଇ ତୃଣମୂଳସ୍ତରରେ ଗ୍ରାମପଞ୍ଚାୟତ, ବ୍ଲକ୍ ସ୍ତରରେ ପଞ୍ଚାୟତ ସମିତି ଏବଂ ଜିଲ୍ଲାସ୍ତରରେ ଜିଲ୍ଲା ପରିଷଦ ଏହିଭଳି ତ୍ରିସ୍ତରୀୟ ପଞ୍ଚାୟତିରାଜ ବ୍ୟବସ୍ଥାର ଦ୍ୱାର ଉନ୍ମୁକ୍ତ କରିଦେଲା । 'ଓଡ଼ିଶା ଗ୍ରାମପଞ୍ଚାୟତ ଆଇନ ୧୯୫୯' ଏହାର ପ୍ରତିଫଳନ । ଏହି ଆଇନ ବଳରେ ୧୯୬୧ ମସିହା ଜାନୁଆରୀ ୨୫ ତାରିଖରେ ପଞ୍ଚାୟତ ସମିତି ଏବଂ ସେହି ବର୍ଷ ମାର୍ଚ୍ଚ ମଧ୍ୟଭାଗରେ ଜିଲ୍ଲା ପରିଷଦ ଗଠିତ ହେଲା ।

ସେହି ବର୍ଷ ୧୯୬୧ ମସିହା ଜୁନ ୨୩ ତାରିଖରେ ଉତ୍କଳର ବରପୁତ୍ର ବିଜୁ ପଟ୍ଟନାୟକ ପ୍ରଥମ ଦଫାରେ ମାତ୍ର ୧୫ ମାସ ପାଇଁ ରାଜ୍ୟର ଶାସନ ଦାୟିତ୍ୱ ଗ୍ରହଣ କଲେ । ସମୟର ପରିସୀମାରେ ପନ୍ଦର ମାସ ସ୍ୱଳ୍ପ ପ୍ରତୀୟମାନ ଥିଲେ ହେଁ ରାଜ୍ୟକୁ

ସମୃଦ୍ଧ କରିବାର ବହୁ ଯୁଗାନ୍ତକାରୀ ପଦକ୍ଷେପରେ ଏହା ପରିପୁଷ୍ଟ । ଶିକ୍ଷା, ଶିଳ୍ପ, ଭିତ୍ତିଭୂମି ପ୍ରତିଷ୍ଠା– ପ୍ରତିଟି କ୍ଷେତ୍ରରେ ତାଙ୍କର ଅବଦାନ ସବୁଦିନ ପାଇଁ ଏ ଜାତି ସ୍ମରଣ କରୁଥିବ । ଆଳସ୍ୟ ଓ କର୍ମକାତରତାର ନିସ୍ତେଜକ ବଟିକା ସେବନ କରି ନିଦ୍ରାଗ୍ରସ୍ତ ଜାତିକୁ ଜାଗ୍ରତ କରିବାରେ ତାଙ୍କର ଯେଉଁ ଭୂମିକା ରହିଛି, ସେଥିନିମନ୍ତେ କୃତଜ୍ଞତା ଜଣାଇବା ପାଇଁ କୌଣସି ଶବ୍ଦର ଶକ୍ତି ନାହିଁ ! ବିଜୁବାବୁ ଶାସନଭାର ଗ୍ରହଣ କଲାବେଳକୁ ରାଜ୍ୟରେ ତ୍ରିସ୍ତରୀୟ ପଞ୍ଚାୟତିରାଜ ବ୍ୟବସ୍ଥାର ଭିତ୍ତିଭୂମି ପ୍ରତିଷ୍ଠା ହୋଇଥିଲା । ବିଜୁବାବୁ ପଞ୍ଚାୟତିରାଜ ବ୍ୟବସ୍ଥାକୁ ଜୀବନ୍ୟାସ ଦେବା ସହ ତୃଣମୂଳସ୍ତରର ପ୍ରତିନିଧିମାନଙ୍କୁ ମହିମାମଣ୍ଡିତ କରିଥିଲେ । ସରପଞ୍ଚଙ୍କୁ 'ପଞ୍ଚାୟତର ମୁଖ୍ୟମନ୍ତ୍ରୀ' ଆଖ୍ୟା ଦେଇ ସେ ସମଗ୍ର ପଞ୍ଚାୟତକୁ ରାଜ୍ୟର ପ୍ରତିଚ୍ଛବି ଭାବେ ପ୍ରତିପାଦନ କରିଥିଲେ । ୧୯୬୧ ମସିହା ନଭେମ୍ବର ୨୦ ତାରିଖରେ ଓଡ଼ିଶା ବିଧାନସଭାରେ ପଞ୍ଚାୟତିରାଜ ବ୍ୟବସ୍ଥା ସଂପର୍କରେ ତାଙ୍କର ଅଭିଭାଷଣ ଗ୍ରାମାଞ୍ଚଳର ପ୍ରତିନିଧିମାନଙ୍କ ପ୍ରତି ତାଙ୍କର ଆସ୍ଥା ଓ ଶ୍ରଦ୍ଧା ନିବେଦନ ଭାବେ ପରିଗଣିତ ରହିବ । ସେ କହିଥିଲେ– 'ପଞ୍ଚାୟତିରାଜ ବ୍ୟବସ୍ଥା ଜନ ପ୍ରତିନିଧି ଆସ୍ଥା–ପରୀକ୍ଷାର ଜନ ଆନ୍ଦୋଳନ । ଆମେ ଏପରି ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ଉପନୀତ ଯେ ଆମକୁ ପ୍ରମାଣ ଦେବାକୁ ପଡ଼ିବ କି ବାସ୍ତବରେ ଆମେ ତୃଣମୂଳସ୍ତରର ପ୍ରତିନିଧିମାନଙ୍କୁ ବିଶ୍ୱାସକୁ ନେଇ ପାରିବା କି ନାହିଁ ।' ୧୯୬୧ ମସିହା ସୁଦ୍ଧା ୧୩ଟି ଜିଲ୍ଲା ପରିଷଦ ଏବଂ ୩୧୪ଟି ପଞ୍ଚାୟତ ସମିତି କାର୍ଯ୍ୟକ୍ଷମ ହୋଇ ପାରିଥିଲା । ପଞ୍ଚାୟତକୁ ଶିଳ୍ପ ସମୃଦ୍ଧ କରିବା ପାଇଁ ବିଜୁବାବୁଙ୍କ 'ପଞ୍ଚାୟତ ଶିଳ୍ପ'ର ପରିକଳ୍ପନା ଅନେକଙ୍କ ପାଇଁ ସେସମୟରେ ବୋଧଶକ୍ତିର ବାହାରେ ଥିଲା । ତାଙ୍କ ଉଦ୍ୟମରେ ଓଡ଼ିଶାର ଅନେକ ପଞ୍ଚାୟତରେ କୃଷିଭିତ୍ତିକ ଶିଳ୍ପର ଶୁଭାରମ୍ଭ ହୋଇପାରିଥିଲା । ପରବର୍ତ୍ତୀ ସମୟରେ ଏହି ପରିକଳ୍ପନାର ଆଧାରରେ ପ୍ରତିଟି ଜିଲ୍ଲାରେ ଶିଳ୍ପ ତାଲିମ କେନ୍ଦ୍ର ପ୍ରତିଷ୍ଠା କରାଗଲା । ୧୯୬୧ ମସିହାରେ ବିଜୁବାବୁ ଗ୍ରାମାଞ୍ଚଳର ପ୍ରତିଟି ଘରକୁ ଟାଇଲ ଘରରେ ପରିଣତ କରିବାର ସ୍ୱପ୍ନ ଦେଖିଥିଲେ । ଆଜିର ଇନ୍ଦିରା ଆବାସ ସେହି ପରିକଳ୍ପନାର ନୂତନ ସଂସ୍କରଣ ।

ଉତ୍କଳର ବରପୁତ୍ର ବିଜୁ ପଟ୍ଟନାୟକଙ୍କୁ ଦ୍ୱିତୀୟ ଥର ପାଇଁ ୧୯୯୦ ମସିହା ମାର୍ଚ୍ଚ ୫ ତାରିଖରୁ ୧୯୯୫ ମସିହା ମାର୍ଚ୍ଚ ୧୫ ତାରିଖ ପର୍ଯ୍ୟନ୍ତ ରାଜ୍ୟର ଶାସନଭାର ଅର୍ପଣ କରାଗଲା । ଶାସନ–ପ୍ରଶାସନ ସଫଳତାର ଏହି ପାଞ୍ଚ ବର୍ଷ ଓଡ଼ିଶାର ସୁବର୍ଣ୍ଣ ଯୁଗ ଭାବେ ଅଭିହିତ । ବିଶେଷ କରି ସର୍ବଦା ଅବହେଳିତ, ନିର୍ଯାତିତ ମହିଳା ଜାତିକୁ ଅଧିକାର ଏବଂ ସ୍ୱାଭିମାନର ସହ ସମାଜର ମୁଖ୍ୟସ୍ରୋତରେ ସାମିଲ କରିବା ପାଇଁ ପଞ୍ଚାୟତିରାଜ ବ୍ୟବସ୍ଥା ମାଧ୍ୟମରେ ବିଜୁବାବୁଙ୍କ ଯୁଗାନ୍ତକାରୀ ପଦକ୍ଷେପ ସମଗ୍ର ଦେଶରେ ସର୍ବପ୍ରଥମ । ତାଙ୍କ ନେତୃତ୍ୱରେ ଓଡ଼ିଶା ଗ୍ରାମପଞ୍ଚାୟତ ଆଇନ ୧୯୬୪ ଏବଂ ଓଡ଼ିଶା ପଞ୍ଚାୟତ ସମିତି ଆଇନ ୧୯୫୯ରେ ସଂଶୋଧନ ଅଣାଯାଇ ଏକ ତୃତୀୟାଂଶ ସ୍ଥାନ ମହିଳାଙ୍କ ସମେତ ତଫସିଲଭୁକ୍ତ ଜାତି ଓ ଉପଜାତିଙ୍କ ସକାଶେ ସଂରକ୍ଷିତ ରହିଲା । ୧୯୯୧ ମସିହାରେ ଓଡ଼ିଶା ଜିଲ୍ଲା ପରିଷଦ ଆଇନ ପ୍ରଣୟନ କରାଗଲା । ୧୯୯୨ ମସିହାରେ ପଞ୍ଚାୟତ ନିର୍ବାଚନ ପରିଚାଳନା ବିଜୁବାବୁଙ୍କର ସବୁଠାରୁ ଉଲ୍ଲେଖନୀୟ ପଦକ୍ଷେପ । ଦୀର୍ଘ ଆଠ ବର୍ଷ ଧରି ପଞ୍ଚାୟତସ୍ତରରେ ଗଣତନ୍ତ୍ରର ଚକ ଜାମ ହୋଇ ପଡ଼ି ରହିଥିଲା । ନ୍ୟସ୍ତସ୍ୱାର୍ଥୀ ରାଜନେତାମାନେ ରାଜନୀତିର ରାଜପଥରେ ତୃଣମୂଳସ୍ତରର ଲୋକ ପ୍ରତିନିଧିଙ୍କ ପ୍ରବେଶ ନିଷେଧ କରି ଦେଇଥିଲେ । ଯେଉଁମାନେ ଗଣତନ୍ତ୍ରର ବାର୍ତ୍ତାବହ, ଗଣତନ୍ତ୍ରର ହୃଦ୍‌ସ୍ପନ୍ଦନ, ସେମାନଙ୍କ ସକାଶେ ଗଣତନ୍ତ୍ରର ଦ୍ୱାର ବନ୍ଦ କରି ଦିଆଯାଇଥିଲା । ବିଜୁବାବୁ ସେହିମାନଙ୍କୁ କୋଳେଇ ନେଲେ । ୫୨୬୪ ଗ୍ରାମପଞ୍ଚାୟତରେ ଗଣତନ୍ତ୍ରର ବିଜୟବାନା ଉଡ଼ିଲା ।

ସଂଶୋଧିତ ଗ୍ରାମପଞ୍ଚାୟତ ଆଇନର ତିନୋଟି ମୁଖ୍ୟ ଅଂଶ ହେଲା–

୧. ଯଦି ନିର୍ବାଚିତ ସରପଞ୍ଚ ପୁରୁଷ ହୁଅନ୍ତି, ନାଏବ ସରପଞ୍ଚ ପଦବୀ ମହିଳାଙ୍କ ସକାଶେ ସଂରକ୍ଷିତ ରହିବ ।

୨. ସମସ୍ତ ୱାର୍ଡ଼ ସଂଖ୍ୟାର ଏକ ତୃତୀୟାଂଶ ମହିଳା ଏବଂ ତଫସିଲଭୁକ୍ତ ଜାତି ଓ ଉପଜାତିଙ୍କ ସକାଶେ ସଂରକ୍ଷିତ ରହିବ ।

୩. ପୂର୍ବରୁ ନ୍ୟସ୍ତ ଥିବା କାର୍ଯ୍ୟାବଳୀ ସହିତ ଗ୍ରାମପଞ୍ଚାୟତ ଉପରେ ମହିଳା ଓ ଶିଶୁ କଲ୍ୟାଣ ବିଭାଗ, ସାମାଜିକ ବନୀକରଣ, ଗ୍ରାମ୍ୟ ଗୃହ ଯୋଜନା, କ୍ଷୁଦ୍ର ଶିଳ୍ପ, ସାଧାରଣ ବଣ୍ଟନ ବ୍ୟବସ୍ଥା ଅର୍ପଣ କରାଗଲା ।

ସେହିଭଳି ପଞ୍ଚାୟତ ସମିତି ଆଇନରେ ଏବଂ ଜିଲ୍ଲା ପରିଷଦ ଆଇନରେ ଏକ ତୃତୀୟାଂଶ ସଂରକ୍ଷଣ ଏବଂ ଭାଇସ୍–ଚେୟାରମ୍ୟାନ ପଦବୀ ମହିଳାଙ୍କ ସକାଶେ ଉଦ୍ଦିଷ୍ଟ ରହିଲା । ବିଜୁବାବୁ ମହିଳା ସଶକ୍ତିକରଣରେ ଯେଉଁ ଐତିହାସିକ ପଦକ୍ଷେପ ନେଇଛନ୍ତି, ତାହା ବିଶ୍ୱ ଇତିହାସରେ ବିରଳ । ଗୋଟିଏ ଦୃଷ୍ଟାନ୍ତ ଦେଲେ ତାହା ସ୍ପଷ୍ଟ ହୋଇ ଉଠିବ ।

ସୁଇଜରଲ୍ୟାଣ୍ଡ ଗୋଟିଏ ସମୃଦ୍ଧ ଗଣତାନ୍ତ୍ରିକ ରାଷ୍ଟ୍ର । ସେ ଦେଶରେ ଜୀବନର ମାନ ସମଗ୍ର ବିଶ୍ୱରେ ସର୍ବୋତ୍ତମ । ସ୍ୱାସ୍ଥ୍ୟ ଓ ଜୀବନବୀମା ସହିତ କମ୍ପ୍ୟୁଟର ଓ ଇଣ୍ଟରନେଟ ଗ୍ରାହକ ସର୍ବାଧିକ । ଉଭୟ ପୁରୁଷ ଓ ମହିଳା ସାକ୍ଷରତା ହାର ୧୦୦% । ୧୮୪୮ ମସିହାରେ ସେ ଦେଶରେ ସମ୍ବିଧାନ ଗୃହୀତ ହେଲା । ୧୮୮୬ ମସିହାରୁ ସେ ଦେଶର ମହିଳା ନାଗରିକ ଅଧିକାର ଦାବି କରି ଆସୁଥିଲେ ମଧ୍ୟ ୧୯୭୧ ମସିହାରେ ସେମାନଙ୍କୁ ଭୋଟ ଦେବାର ଅଧିକାର ପ୍ରଦାନ କରାଗଲା । ୧୯୫୯ ମସିହା ଫେବୃଆରୀ ୧ ତାରିଖରେ ଅନୁଷ୍ଠିତ ଜାତୀୟ ଜନମତରେ ୬୭% ପୁରୁଷ ମହିଳାମାନଙ୍କୁ ଭୋଟ ପ୍ରଦାନ ଅଧିକାରକୁ ଅଗ୍ରାହ୍ୟ କରିଥିଲେ । ୧୯୮୪ ମସିହାରେ ପ୍ରଥମ ଥର ପାଇଁ ଜଣେ ମହିଳା ସରକାରରେ ସାମିଲ ହେଲେ । ୧୯୮୫ ମସିହାରେ ମହିଳାମାନଙ୍କୁ ପରିବାରରେ ସମାନ ଅଧିକାର ପ୍ରଦାନ କରାଗଲା । ଆମେରିକା ଭଳି ଶକ୍ତିଶାଳୀ ରାଷ୍ଟ୍ରର ୨୪୦ ବର୍ଷର ସମୃଦ୍ଧ ଗଣତାନ୍ତ୍ରିକ ପରମ୍ପରାରେ ଏ ପର୍ଯ୍ୟନ୍ତ କେହି ମହିଳା ଦେଶର ସର୍ବୋଚ୍ଚ ଶାସନରେ ଅଧିଷ୍ଠିତ ହୋଇ ପାରିନାହାନ୍ତି । ସଂଯୁକ୍ତ ଆରବ ଏମିରେଟସରେ ୨୦୦୬ ଏବଂ କୁଏତରେ ୨୦୦୫ ମସିହାରେ ମହିଳାମାନଙ୍କୁ ଭୋଟ ଦେବାର ଅଧିକାର ପ୍ରଦାନ କରାଗଲା । କିନ୍ତୁ ସାଉଦି ଆରବିୟା ଓ ବ୍ରୁଣେଇର ମହିଳାମାନେ ଏ ପର୍ଯ୍ୟନ୍ତ ଏ ଅଧିକାରରୁ ବଞ୍ଚିତ ଅଛନ୍ତି । ମହିଳାଙ୍କ ଅଧିକାର ପରିପ୍ରେକ୍ଷୀରେ ଏ ହେଉଛି ସମୃଦ୍ଧ ରାଷ୍ଟ୍ରମାନଙ୍କର କାହାଣୀ ।

୧୯୯୨ ମସିହାରେ ଦେଶର ସମ୍ବିଧାନରେ ସଂଶୋଧନ ଅଣାଯାଇ ପଞ୍ଚାୟତିରାଜ ବ୍ୟବସ୍ଥାକୁ ସାମ୍ବିଧାନିକ ସ୍ୱୀକୃତି ପ୍ରଦାନ କରାଗଲା । ୧୯୯୩ ମସିହା ଏପ୍ରିଲ ୨୪ ତାରିଖରୁ ଏହା ଲାଗୁ ହେଲା । ଏହି ସମ୍ବିଧାନ ସଂଶୋଧନର ମୁଖ୍ୟାଂଶ ହେଲା-

୧. ୨୦ ଲକ୍ଷରୁ ଉର୍ଦ୍ଧ୍ୱ ଜନସଂଖ୍ୟା ବିଶିଷ୍ଟ ରାଜ୍ୟରେ ତ୍ରିସ୍ତରୀୟ ପଞ୍ଚାୟତିରାଜ ବ୍ୟବସ୍ଥା ଲାଗୁ ହେବ ।

୨. ପ୍ରତି ପାଞ୍ଚ ବର୍ଷ ବ୍ୟବଧାନରେ ପଞ୍ଚାୟତ ନିର୍ବାଚନ ଅନୁଷ୍ଠିତ ହେବ ।

୩. ଅତି କମ୍‌ରେ ୩୩% ସ୍ଥାନ ମହିଳା ଏବଂ ତଫସିଲଭୁକ୍ତ ଜାତି ଓ ଉପଜାତିଙ୍କ ନିମନ୍ତେ ଉଦ୍ଦିଷ୍ଟ ରହିବ ।

କେନ୍ଦ୍ର ସରକାର ଏହା ଲାଗୁ କରିବା ପୂର୍ବରୁ ଓଡ଼ିଶାରେ ବିଜୁ ପଟ୍ଟନାୟକଙ୍କ ସରକାର ଏ ସମସ୍ତ ନିୟମ ଲାଗୁ କରି ସାରିଥିଲେ ।

ବିଜୁବାବୁଙ୍କ ଭାଷାରେ- ପଞ୍ଚାୟତିରାଜରେ ଏପରି ପୂର୍ଣ୍ଣାଙ୍ଗ ଶାସନ ବ୍ୟବସ୍ଥା ଅନୁଶୀଳନ ହେବା ଉଚିତ, ଯାହା ତୃଣମୂଳସ୍ତରର ପୁରୁଷ ଓ ମହିଳା ଉଭୟଙ୍କୁ ଆକର୍ଷିତ କରିବ । ମୋ' ରାଜ୍ୟର ଅଭିଜ୍ଞତାରୁ ମୁଁ ଏହା ଜାଣିପାରିଛି ଯେ ୫୦% ନିର୍ବାଚିତ ମହିଳା ପ୍ରତିନିଧିଙ୍କୁ ଶାସନ କ୍ଷମତାର ୫୦% ଅଧିକାର ଅର୍ପଣ ନ କଲେ ଦେଶର ପ୍ରଗତି ଅସମ୍ଭବ ବୋଲି ସେ କହିଥିଲେ । ମ୍ୟୁନିସିପାଲିଟି ଏବଂ ପଞ୍ଚାୟତ ସ୍ତରରେ ମହିଳାଙ୍କ ସକାଶେ ୩୩% ସ୍ଥାନ ସଂରକ୍ଷଣରେ ମୋ' ରାଜ୍ୟ ଓଡ଼ିଶା ସମଗ୍ର ଦେଶରେ ସର୍ବପ୍ରଥମ ପଦକ୍ଷେପ ନେଇଛି । ଦୁଇ ବର୍ଷ ପରେ ପାର୍ଲାମେଣ୍ଟରେ ସମ୍ବିଧାନ ସଂଶୋଧନ କରାଯାଇ ସେହି ସମାନ ପ୍ରସ୍ତାବ ଅଣାଗଲା । କିନ୍ତୁ ଏବେ ୩୩% ସ୍ଥାନ ସଂରକ୍ଷଣ ସକାଶେ ମୁଁ ଅନୁତାପ କରୁଛି । ସେହି ସମୟରେ ଏହା ୫୦% ହେବା ଉଚିତ ଥିଲା । ବର୍ତ୍ତମାନ ଏପରି ଆଇନ ପ୍ରଣୟନର ଆବଶ୍ୟକତା ରହିଛି ଯାହାଫଳରେ ପାର୍ଲାମେଣ୍ଟ ଏବଂ ସମସ୍ତ ରାଜ୍ୟ ବିଧାନସଭାରେ ମହିଳାଙ୍କ ସକାଶେ ୫୦% ସ୍ଥାନ ସଂରକ୍ଷିତ ରହିଥିଲା ତାଙ୍କର ମତ । ବିଜୁବାବୁଙ୍କ ଜନ୍ମଦିନ ଆମ ରାଜ୍ୟରେ ପଞ୍ଚାୟତିରାଜ ଦିବସ ଭାବେ ପାଳିତ ହେଉଛି । ଯେଉଁ ଦିନ ପଞ୍ଚାୟତସ୍ତରରୁ ପାର୍ଲାମେଣ୍ଟ ପର୍ଯ୍ୟନ୍ତ ସମସ୍ତ ନିର୍ବାଚନ ପ୍ରକ୍ରିୟାରେ ମହିଳାମାନଙ୍କ ପାଇଁ ୫୦% ସ୍ଥାନ ସଂରକ୍ଷିତ ହେବ, ସେହିଦିନ ବିଜୁବାବୁଙ୍କର ସ୍ୱପ୍ନ ସଫଳ ହେବ ।

ସାଳନ୍ଦୀ ନଗର
ଭଦ୍ରକ-୭୫୬୧୦୦



# ବିଜୁଙ୍କ ଆହ୍ୱାନ 'ଗାଁକୁ କାମ, ମାଆକୁ ସମ୍ମାନ'

ପବିତ୍ର ମୋହନ ବାରିକ

ଓଡ଼ିଆ ଜାତିର ଗର୍ବ, ଗୌରବ, ସ୍ୱାଭିମାନର ପ୍ରତୀକ ପ୍ରବାଦ ପୁରୁଷ ବିଜୁ ପଟ୍ଟନାୟକଙ୍କ ଅନେକ କାଳଜୟୀ କୃତିତ୍ୱ ମଧ୍ୟରୁ ନାରୀ ଜାଗରଣ ଓ ନାରୀ ଜାତିର ବିକାଶ ପ୍ରତି ଥିଲା ତାଙ୍କର ଅସୀମ ଶ୍ରଦ୍ଧା ଓ ସଭକ୍ତି ସମ୍ମାନ । ତାଙ୍କ ଜୀବଦଶାରେ ମହିଳାମାନଙ୍କ ମହତ୍ୱକୁ ସେ ଶ୍ରେଷ୍ଠ ସ୍ଥାନ ଦେଇ ଆସିଥିଲେ । ଏକ ସ୍ୱାଭିମାନୀ, ବୀର ଓ ନିର୍ଭୀକ ଓଡ଼ିଆ ଜାତି ଗଠନ ଦିଗରେ ମା'ମାନଙ୍କର ଗୁରୁଦାୟିତ୍ୱ ରହିଛି – ଏହା ବିଜୁ ବାବୁ ଉପଲବ୍ଧି କରିଥିଲେ ।

ବିଜୁବାବୁଙ୍କମାତା ଆଶାଲତା ଦେବୀ ସ୍ୱାଧୀନତା ସଂଗ୍ରାମ ପରିପ୍ରେକ୍ଷୀରେ ମୁକ୍ତି ଯୋଦ୍ଧାମାନଙ୍କର ସଂଘର୍ଷପୂର୍ଣ୍ଣ କାହାଣୀ ବର୍ଣ୍ଣନା କରି ତାଙ୍କ ହୃଦୟରେ ଜାତିପ୍ରେମ ଓ ଦେଶଭକ୍ତିର ଭାବଧାରା ସୃଷ୍ଟି କରିପାରିଥିଲେ । ଆଶାଲତା ଦେବୀ ଥିଲେ ବିଜୁବାବୁଙ୍କ ପାଇଁ ପ୍ରେରଣା ଓ ଉତ୍ସାହର ଏକ ପ୍ରବାହମାନଧାରା । ଚିଟାଗଞ୍ଜ ଅସ୍ତ୍ରାଗାର ଲୁଣ୍ଠନ କାର୍ଯ୍ୟରେ ବିଜୁବାବଙ୍କ ମାତା ଆଶାଲତା ଦେବୀଙ୍କ ସାନ ଭାଇ ବିଜୟଶ୍ରୀ, ତାଙ୍କ ପୁତୁରା ଦେବପ୍ରସାଦ, ଆନନ୍ଦ ପ୍ରସାଦ ମୁଖ୍ୟ ନେତୃତ୍ୱ ନେଇଥିଲେ । ଦେବପ୍ରସାଦ ପୋଲିସ ଗୁଳିରେ କ୍ଷତବିକ୍ଷତ ହୋଇ ଛୁରି ଦ୍ୱାରା ଆତ୍ମହତ୍ୟା କଲେ । ଆନନ୍ଦ ପ୍ରସାଦ ବନ୍ଦୀ ହୋଇ ଜେଲଦଣ୍ଡରେ ଦଣ୍ଡିତ ହୋଇଥିଲେ । ଆଶାଲତା ଦେବୀ ଏମାନଙ୍କ ବୀରତ୍ୱପୂର୍ଣ୍ଣ କାହାଣୀ ବର୍ଣ୍ଣନା କରି ବିଜୁବାବୁଙ୍କ ମନରେ ସ୍ୱାଧୀନତା ସଂଗ୍ରାମ ପ୍ରତି ପ୍ରବଳ ଆଗ୍ରହ ସୃଷ୍ଟି କରିପାରିଥିଲେ । ମାତା ଆଶାଲତା ଦେବୀଙ୍କ ପ୍ରେରଣାରେ ଅନୁପ୍ରାଣିତ ହୋଇ ସେ ପରବର୍ତ୍ତୀ ସମୟରେ ସେ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିଲେ । ପ୍ରଚଣ୍ଡ ବିପ୍ଳବିଣୀ ଶ୍ରୀମତୀ ଅରୁଣା ଆସଫ ଅଲ୍ଲୀଙ୍କୁ ବିଜୁବାବୁ ନିଜ ବିମାନରେ ଆଣି କଟକସ୍ଥିତ ତୁଳସୀପୁରର ବାସଭବନରେ ଗୋପନରେ ରଖିଥିଲେ ।

ସାଧାରଣତଃ ଗ୍ରାମୀଣ ଓ ପଛୁଆବର୍ଗର ମହିଳାମାନଙ୍କର ଉନ୍ନତି ଆଣିବା ଦିଗରେ ଅନେକ ଯୋଜନା କାର୍ଯ୍ୟକାରୀ କରାଯାଇଅଛି । ମହିଳାମାନଙ୍କୁ ରାଜନୈତିକ ସଶକ୍ତିକରଣ, ଅର୍ଥନୈତିକ ସ୍ୱାବଲମ୍ବୀ ଓ ସାମାଜିକ ସମାନତା ପ୍ରଦାନ କରିବା ଦିଗରେ ଅନେକ ଦୂରଦୃଷ୍ଟିସଂପନ୍ନ ରାଷ୍ଟ୍ରନୀତିଜ୍ଞ, ଦାର୍ଶନିକ ଓ ବିଦ୍ୱାନମାନେ ନିରନ୍ତର ପ୍ରଚେଷ୍ଟା ଅବ୍ୟାହତ ରଖିଛନ୍ତି । ନାରୀଜାତିକୁ ତା'ର ନ୍ୟାଯ୍ୟ ଅଧିକାର ପ୍ରଦାନ ନିମନ୍ତେ ବିଜୁ ପଟ୍ଟନାୟକ ବହୁ ବୈପ୍ଳବିକ ପରିବର୍ତ୍ତନ ଆରମ୍ଭ କରିଥିଲେ । ତାଙ୍କ ମୁଖ୍ୟମନ୍ତ୍ରିତ୍ୱର ଦ୍ୱିତୀୟ ପର୍ଯ୍ୟାୟରେ ନାରୀ ସମାଜର ମଙ୍ଗଳ ନିମନ୍ତେ ଅନେକ ଯୁଗୋପଯୋଗୀ ପଦକ୍ଷେପମାନ ଗ୍ରହଣ କରିଥିଲେ । ବିଜୁବାବୁ ନାରୀ ନିର୍ଯ୍ୟାତନାକୁ ଦୃଢ଼ ହସ୍ତରେ ଦମନ କରିବା ନିମନ୍ତେ କଠୋର ପ୍ରଶାସନିକ ବ୍ୟବସ୍ଥା ପ୍ରଣୟନ କରିବା ସହିତ ନାରୀମାନଙ୍କୁ ପୁରୁଷମାନଙ୍କ ସହିତ ସମକ୍ଷମ କରିବା ପାଇଁ ଉଦ୍ୟମ କରିଥିଲେ ।

### ନାରୀଶିକ୍ଷା

ନାରୀମାନେ ଆତ୍ମନିର୍ଭରଶୀଳା ହୋଇପାରିଲେ ସେମାନଙ୍କର ଅଧିକାଂଶ ସମସ୍ୟାର ସମାଧାନ ହୋଇପାରିବ ବୋଲି ବିଜୁବାବୁ ଆଶାବାଦୀ ଥିଲେ । ଅନ୍ୟାନ୍ୟ ଖ୍ୟାତନାମା ବ୍ୟକ୍ତିତ୍ୱମାନଙ୍କ ପରି ବିଜୁବାବୁ ନାରୀଶିକ୍ଷା ସପକ୍ଷରେ ଥିଲେ । ସାମାଜିକ ଉନ୍ନତି ଓ ସଶକ୍ତିକରଣର ମୌଳିକ ବ୍ୟବସ୍ଥା ନାରୀଶିକ୍ଷା ଉପରେ ନିର୍ଭର କରେ, ଏହା ବିଜୁବାବୁ ଭଲ ଭାବରେ ହୃଦୟଙ୍ଗମ କରିଥିଲେ । ତାଙ୍କ ଶାସନ ସମୟରେ ଓଡ଼ିଶା ମଧ୍ୟରେ ଅନେକଗୁଡ଼ିଏ ବାଳିକା ବିଦ୍ୟାଳୟ, ମହିଳା ମହାବିଦ୍ୟାଳୟ, ମହିଳା ଶିକ୍ଷା ପ୍ରଶିକ୍ଷଣ ମହାବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ । ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ମଧ୍ୟ ବିଜୁବାବୁ ଅନେକ ବାଳିକା ବିଦ୍ୟାଳୟ ସ୍ଥାପନରେ ସହାୟତା ଯୋଗାଇ ଦେଇଥିଲେ । ବିଜୁବାବୁ ଅଧିକ

ସଂଖ୍ୟାରେ ହରିଜନ ଓ ଆଦିବାସୀ ଛାତ୍ରୀମାନଙ୍କୁ ଛାତ୍ରବୃତ୍ତି ତାଙ୍କ ଶାସନ ସମୟରେ ପ୍ରଦାନ କରିଥିଲେ । ଘରୋଇ ଉଦ୍ୟମରେ ପ୍ରତିଷ୍ଠିତ ଏବଂ ସରକାରୀ ଅନୁଦାନ ପାଉଥିବା ବାଳିକା ଉଚ୍ଚବିଦ୍ୟାଳୟ ଓ ମହିଳା ମହାବିଦ୍ୟାଳୟମାନଙ୍କୁ ବିଭିନ୍ନ କ୍ଷେତ୍ରରେ ଅଧିକ ସହାୟତା ଯୋଗାଇ ଦେଇଥିଲେ । ଛାତ୍ରୀମାନଙ୍କୁ ବିଜ୍ଞାନ, ବୈଷୟିକ ଶିକ୍ଷା, ପ୍ରତିଭା ବିକାଶ ପ୍ରଭୃତି ବିଷୟରେ ଶିକ୍ଷା ଦେବାରେ ବିଜୁବାବୁ ଗୁରୁତ୍ୱ ଦେଉଥିଲେ ।

୧୯୯୪ ମସିହା ମାର୍ଚ୍ଚ ମାସ ୧ ତାରିଖରୁ ୮ ତାରିଖ ପର୍ଯ୍ୟନ୍ତ ଆନ୍ତର୍ଜାତିକ ମହିଳା ସପ୍ତାହ ପାଳନ ଅବସରରେ ରାଜ୍ୟ ସମାଜମଙ୍ଗଳ ପରିଷଦଦ୍ୱାରା ମହିଳାମାନଙ୍କୁ ସଶକ୍ତିକରଣ ଓ ସମାନତା ପ୍ରଦାନ ଦିଗରେ ଗଣ ସଚେତନତା କାର୍ଯ୍ୟକ୍ରମମାନ ଆରମ୍ଭ ହୋଇଥିଲା । ମହିଳାମାନଙ୍କ ନିମନ୍ତେ ଆୟୋଜିତ ରାଜ୍ୟସ୍ତରୀୟ ଆଲୋଚନାଚକ୍ରରେ ବିଜୁବାବୁ ନିଜେ ଅଂଶ ଗ୍ରହଣ କରି ମହିଳାମାନଙ୍କ ମଧ୍ୟରେ ବିଜ୍ଞାନ ଓ ବୈଷୟିକ ଜ୍ଞାନ ବୃଦ୍ଧିନିମନ୍ତେ ଗୁରୁତ୍ୱାରୋପ କରିଥିଲେ । ଓଡ଼ିଶା ସରକାରଙ୍କର ବିଭିନ୍ନ ବିଭାଗରେ ଚାକିରି କରିବା ନିମନ୍ତେ ମହିଳା ପ୍ରାର୍ଥୀମାନଙ୍କର ବୟସସୀମା ପାଞ୍ଚବର୍ଷ ପର୍ଯ୍ୟନ୍ତ ବୃଦ୍ଧି କରିବା ପାଇଁ ବିଜୁବାବୁଙ୍କ ସରକାର ନିଷ୍ପତ୍ତିଗ୍ରହଣ କରିଥିଲେ ।

୧୯୯୪ ମସିହାରେ ବିଜୁବାବୁ ସବାଇଘାସ ବିକାଶ ନିଗମ ନାମକ ଏକ ସଂସ୍ଥା ସ୍ଥାପନ କରିଥିଲେ । ସବାଇଘାସରୁ ସାଧାରଣତଃ ହରିଜନ ଓ ଆଦିବାସୀ ସଂପ୍ରଦାୟର ମହିଳାମାନେ ବିଭିନ୍ନ ଗୃହୋପକରଣ ପଦାର୍ଥମାନ ପ୍ରସ୍ତୁତ କରନ୍ତି । ସେମାନେ ଏଥିରୁ ମୁଖ୍ୟତଃ ଦଉଡ଼ି ପ୍ରସ୍ତୁତ କରନ୍ତି । ଗରିବ ମହିଳାମାନଙ୍କ ଦ୍ୱାରା ସବାଇଘାସରୁ ପ୍ରସ୍ତୁତ ପଦାର୍ଥମାନ ମଧ୍ୟସ୍ଥି ଓ ଅସାଧୁ ବ୍ୟବସାୟୀମାନେ ଶୋଷଣ କରୁଥିଲେ । ଏହାର ନିରାକରଣ ନିମନ୍ତେ ବିଜୁବାବୁ ସବାଇଘାସ ବିକାଶନିଗମ ପ୍ରତିଷ୍ଠା କରିଥିଲେ। ଏହି ନିଗମ ମାଧ୍ୟମରେ ଗରିବ ମହିଳାମାନଙ୍କୁ ଉନ୍ନତ କିସମର ସବାଇଘାସ ବିହନମାନ ଯୋଗାଇ ଦିଆଯାଉଥିଲା ଏବଂ ସେମାନଙ୍କୁ ସମସ୍ତ ବ୍ୟବସାୟୀଙ୍କର ସହଯୋଗ ମଧ୍ୟ ପ୍ରଦାନ କରାଯାଉଥିଲା । ଏହି ନିଗମ ମଧ୍ୟ ମହିଳାମାନଙ୍କର ଦକ୍ଷତା ବୃଦ୍ଧି ପାଇଁ ବୈଷୟିକ ତାଲିମର ବ୍ୟବସ୍ଥା କରିଥିଲେ । ସେମାନଙ୍କ ଦ୍ୱାରା ପ୍ରସ୍ତୁତ ପଦାର୍ଥର ବିକ୍ରୟ ଦାୟିତ୍ୱ ମଧ୍ୟ ଗ୍ରହଣ କରାଯାଇଥିଲା। ଗରିବ ଆଦିବାସୀ-ହରିଜନ ମହିଳାମାନଙ୍କ ସ୍ୱାର୍ଥପ୍ରତି ବିଜୁବାବୁଙ୍କର ଥିବା ଆନ୍ତରିକତାର ଏହା ପ୍ରକୃତ ଉଦାହରଣ । ମହିଳାମାନଙ୍କ ପାଇଁ ବିଭିନ୍ନ ସରକାରୀ ଓ ସରକାରଙ୍କ କର୍ତ୍ତୃତ୍ୱାଧୀନ ନିଗମମାନଙ୍କରେ ଶତକଡ଼ା ୩୦ ଭାଗ ଚାକିରି ସଂରକ୍ଷଣ କରିବାର ଏକ ଐତିହାସିକ ପଦକ୍ଷେପ ବିଜୁବାବୁ ଗ୍ରହଣ କରିଥିଲେ । ଏପର୍ଯ୍ୟନ୍ତ ଅନ୍ୟ କୌଣସି ରାଜ୍ୟ ଏହାକୁ କାର୍ଯ୍ୟକାରୀ କରିନାହାନ୍ତି । ଅସହାୟ ବିଧବା ପେନ୍‌ସନ୍‌ଧାରୀମାନଙ୍କ ବୟସସୀମା ବିଜୁବାବୁ ଉଚ୍ଛେଦ କରିଥିଲେ।

ମହିଳା ବିକାଶନିଗମ

ବିଜୁବାବୁଙ୍କ ମୁଖ୍ୟମନ୍ତ୍ରିତ୍ୱ ସମୟରେ ଓଡ଼ିଶା ସରକାର ମହିଳାମାନଙ୍କର ସର୍ବାଙ୍ଗୀନ ଉନ୍ନତି ପାଇଁ ୧୯୯୧ ମସିହାରେ ମହିଳା ବିକାଶନିଗମ ସ୍ଥାପନ କରିଥିଲେ । ଏହା ଏକ ମିଳିତ ସଂଗଠନ । ଭାରତ ସରକାର, ଓଡ଼ିଶା ସରକାର ଓ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କର ମିଳିତ ଉଦ୍ୟମରେ ଗଠିତ ମହିଳା ବିକାଶ ନିଗମ ଓଡ଼ିଆନାରୀମାନଙ୍କର ସର୍ବବିଧ ମଙ୍ଗଳ ସାଧନ ନିମନ୍ତେ ନିରନ୍ତର ଉଦ୍ୟମ ଅବ୍ୟାହତ ରଖିଅଛି । ମହିଳା ବିକାଶନିଗମର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ବ୍ୟାପକ । ପ୍ରଥମତଃ ମହିଳାମାନଙ୍କ ପାଇଁ ଉଦ୍ଦିଷ୍ଟ ବିକାଶ ଯୋଜନାକୁ ଜିଲ୍ଲା, ବ୍ଲକ୍, ଗ୍ରାମପଞ୍ଚାୟତ ଓ ଗ୍ରାମସ୍ତରରୁ ଆରମ୍ଭ କରିବା ଏହିନିଗମର ଲକ୍ଷ୍ୟ ଅଟେ । ଦ୍ୱିତୀୟତଃ ମହିଳାମାନଙ୍କର ସାମାଜିକ ବିକାଶ ଓ ଅର୍ଥନୈତିକ ଅଭିବୃଦ୍ଧି ଦିଗରେ ମହିଳା ବିକାଶନିଗମ କାର୍ଯ୍ୟ କରିଥାଏ । ମହିଳା ଉଦ୍ୟୋଗୀମାନଙ୍କୁ ପ୍ରଶିକ୍ଷଣ ଦେବା ମହିଳା ବିକାଶନିଗମର ଅନ୍ୟତମ ଲକ୍ଷ୍ୟ । ମହିଳାମାନଙ୍କ ଦ୍ୱାରା ପରିଚାଳିତ ଉଦ୍ୟୋଗମାନଙ୍କ ପାଇଁ ମହିଳା ବିକାଶ ନିଗମ ବିଭିନ୍ନ ବ୍ୟାଙ୍କ ଓ ଅର୍ଥ ଲଗାଣକାରୀ ସଂସ୍ଥାଠାରୁ ଋଣ ଆଣି ମହିଳାମାନଙ୍କୁ ସହାୟତା ଯୋଗାଇ ଦେଇଥାଏ । ମହିଳା ବିକାଶନିଗମ ଦକ୍ଷତାର ସହିତ ତା'ର କାର୍ଯ୍ୟ ସମାପନ କରି ବିଜୁବାବୁଙ୍କ ସ୍ୱପ୍ନକୁ ସାକାର କରିବାରେ ଅଙ୍ଗୀକାରବଦ୍ଧ। ମହିଳାମାନଙ୍କର ଆର୍ଥିକ ଅଭିବୃଦ୍ଧି ନିମନ୍ତେ ମହିଳା ବିକାଶ ନିଗମ ଅନେକ ଆୟକାରୀ କାର୍ଯ୍ୟପନ୍ଥା ଗ୍ରହଣ କରିଛି । ସାମାଜିକ ସଶକ୍ତିକରଣ, ମହିଳାମାନଙ୍କ ଦ୍ୱାରା ପ୍ରସ୍ତୁତ ପଦାର୍ଥର ବିକ୍ରୟରେ ସହଯୋଗ, ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ ଗଠନ ଏବଂ ମହିଳା ଉଦ୍ୟୋଗୀମାନଙ୍କର ସମ୍ମିଳନୀ ଇତ୍ୟାଦି ଆୟୋଜନ କରିବାରେ ମହିଳା ବିକାଶନିଗମ ମୁଖ୍ୟ ଭୂମିକା ଗ୍ରହଣ କରିଥାଏ । ମହିଳା ସ୍ୱୟଂ ସହାୟକ ଗୋଷ୍ଠୀକୁ ଆର୍ଥିକ ସହାୟତା ପ୍ରଦାନ କରିବା ଏବଂ ଅନ୍ୟାନ୍ୟ ଅର୍ଥ ଲଗାଣକାରୀ ସଂସ୍ଥାଠାରୁ ସେମାନଙ୍କୁ ସହଜରେ ଋଣ ମଂଜୁର କରାଇବାରେ ମହିଳା ବିକାଶ ନିଗମ ତା'ର ଗୁରୁ ଦାୟିତ୍ୱ ନିଷ୍ଠାର ସହିତ ସଂପାଦିତ କରିଥାଏ । ବିଭିନ୍ନ ପ୍ରତିଯୋଗିତାମୂଳକ ପରୀକ୍ଷାରେ ମହିଳା ପ୍ରାର୍ଥୀମାନଙ୍କର ଦକ୍ଷତା ବୃଦ୍ଧିନିମନ୍ତେ ମହିଳା ଶିକ୍ଷା କେନ୍ଦ୍ରମାନ ଖୋଲାଯାଇ ସେମାନଙ୍କୁ

ଉପଯୁକ୍ତ ପ୍ରଶିକ୍ଷଣ ଦେବାରେ ବ୍ୟବସ୍ଥା ମହିଳା ବିକାଶନିଗମ କାର୍ଯ୍ୟକାରୀ କରିଅଛି ।

### ଶାଶୁ ହାତକଡ଼ି ନଣନ୍ଦ ବେଡ଼ି

ଯୌତୁକ ପ୍ରଥା ଏକ ସାମାଜିକ କଳଙ୍କ । ଯୌତୁକଜନିତ ବଧୂନିର୍ଯ୍ୟାତନା ଏକ ଅମାନବିକ ଓ ଅବିବେକିତା କାର୍ଯ୍ୟ । ଧନ କାଙ୍ଗାଳ, ଅର୍ଥଲୋଭୀମାନେ ଅନେକ ସମୟରେ ନବବଧୂର ପରିବାରଠାରୁ ନିଜ ଇଚ୍ଛା ମୁତାବକ ଯୌତୁକ ନ ପାଇଲେ ପରିଶେଷରେ ନବବଧୂଙ୍କୁ ନିର୍ଯ୍ୟାତନା ଦେବାକୁ ଏପରିକି ହତ୍ୟା କରିବାକୁ ପଛଘୁଞ୍ଚା ଦିଅନ୍ତିନାହିଁ । ୧୯୯୦ ମସିହା ପୂର୍ବରୁ ଯୌତୁକଜନିତ ହତ୍ୟା ଓ ନିର୍ଯ୍ୟାତନା ଥିଲା ସର୍ବାଧିକ । ପ୍ରତିଦିନ ଏଭଳି ଜଘନ୍ୟ ଘଟଣା ସବୁ ସମ୍ବାଦପତ୍ରର ପୃଷ୍ଠାମଣ୍ଡନ କରୁଥିଲା । ଏପରି ଅମାନୁଷିକ ଓ ନିନ୍ଦନୀୟ ଘଟଣା ବିଜୁବାବୁଙ୍କୁ ଗଭୀର ଭାବରେ ମର୍ମାହତ ଓ ବ୍ୟଥିତ କରିଥିଲା । ଏହା ଅପ୍ରିୟ ସତ୍ୟ ଯୌତୁକଜନିତ ବଧୂହତ୍ୟା ଓ ନିର୍ଯ୍ୟାତନା ପଛରେ ଘରର ସ୍ତ୍ରୀଲୋକମାନଙ୍କର ମୁଖ୍ୟ ଭୂମିକା ଥାଏ । ସାଧାରଣତଃ ଶାଶୁ ଓ ନଣନ୍ଦ ଏହି ଘଟଣାମାନଙ୍କରେ ମୁଖ୍ୟ ଖଳନାୟିକା ସାଜିଥାନ୍ତି । ବିଜୁବାବୁ ହୃଦୟଙ୍ଗମ କରିଥିଲେ ଯେ ଘରର ମହିଳାମାନଙ୍କର ବିନା ପ୍ରରୋଚନା ଓ ସମର୍ଥନରେ ଏଭଳି ହୃଦୟହୀନ କାର୍ଯ୍ୟ କେବେ ସମ୍ଭବ ନୁହେଁ । ଶାଶୁ ଓ ନଣନ୍ଦର ମିଳିତ ଆକ୍ରମଣର ଶିକାର ହୋଇଥାଏ ନବବଧୂ । ବଧୂହତ୍ୟା ଓ ନିର୍ଯ୍ୟାତନାର ନିବାରଣ ନିମନ୍ତେ ବିଜୁବାବୁ ଏକ ପ୍ରଶଂସନୀୟ ଓ ଯୁଗାନ୍ତକାରୀ ପଦକ୍ଷେପ ଗ୍ରହଣ କରିଥିଲେ । ଯେଉଁ ପରିବାରରେ ଏଭଳି ଘଟଣାମାନ ଘଟିବ ସେହି ପରିବାରର ଶାଶୁ ଓ ନଣନ୍ଦଙ୍କୁ ପ୍ରଥମେ ଗିରଫ କରିବାକୁ ବିଜୁବାବୁ ପ୍ରଶାସନିକ ନିର୍ଦ୍ଦେଶ ଦେଇଥିଲେ । ଏପରି ଖଳ ପ୍ରକୃତିର ଶାଶୁ ଓ ନଣନ୍ଦଙ୍କୁ ଉପଯୁକ୍ତ ଶିକ୍ଷା ଦେବାପାଇଁ ବିଜୁବାବୁ ଗୋଟିଏ ସ୍ଲୋଗାନ ପ୍ରଣୟନ କରିଥିଲେ – 'ଶାଶୁ ହାତ କଡ଼ି ନଣନ୍ଦ ବେଡ଼ି ।' ବିଜୁବାବୁଙ୍କର ଏହି ନିର୍ଦ୍ଦେଶକୁ କାର୍ଯ୍ୟକାରୀ କରି ପୋଲିସବାହିନୀ ବଧୂହତ୍ୟାକାରୀ ଶାଶୁ ଓ ନଣନ୍ଦମାନଙ୍କୁ ହାତକଡ଼ି ପକାଇ ରାଜରାସ୍ତାରେ ଚଲାଇଚଲାଇ ହାଜତକୁ ନେଉଥିଲେ । ବିଜୁବାବୁ ଥିଲେ ବାସ୍ତବବାଦୀ । ତାଙ୍କର ଏହି ଦୃଢ଼ ପଦକ୍ଷେପ ରାଜ୍ୟବ୍ୟାପି ବିପୁଳ ସମର୍ଥନ ଓ ପ୍ରଶଂସା ମିଳିଥିଲା । ବିଜୁବାବୁଙ୍କର ଏହି ପଦକ୍ଷେପର ଫଳାଫଳ ଥିଲା ସୁଦୂରପ୍ରସାରୀ ଏବଂ ଏହାଫଳରେ ଯୌତୁକଜନିତ ବଧୂହତ୍ୟା ଓ ନିର୍ଯ୍ୟାତନା ଅନେକାଂଶରେ କମି ଯାଇଥିଲା । ଯୌତୁକ ବିରୋଧରେ ସଂଗ୍ରାମ କରିବାକୁ ବିଜୁବାବୁ ରାଜ୍ୟବାସୀଙ୍କୁ ଆହ୍ୱାନ ଜଣାଇଥିଲେ । ସେ ମଧ୍ୟ ଏକ ସରକାରୀ ଆଦେଶନାମା ଜାରି କରିଥିଲେ ଯଦି କୌଣସି ସରକାରୀ କର୍ମଚାରୀ ଯୌତୁକଜନିତ ଅପରାଧରେ ଦୋଷୀ ସାବ୍ୟସ୍ତ ହୁଅନ୍ତି ତାଙ୍କୁ ଚାକିରିରୁ ନିଲମ୍ବିତ କରାଯିବ । ଯୌତୁକ ପ୍ରଥା ବିରୋଧରେ ଜନସଚେତନତା ସୃଷ୍ଟି କରିବା ପାଇଁ ବିଜୁବାବୁ ଅନେକ ପଦକ୍ଷେପ ଗ୍ରହଣ କରିଥିଲେ । ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କ ମାଧ୍ୟମରେ ଯୌତୁକ ପ୍ରଥା ବିରୁଦ୍ଧରେ ପଥପ୍ରାନ୍ତ ନାଟକ ଓ ଜାତୀୟ ଆଲୋଚନାଚକ୍ରମାନ ଆୟୋଜନ କରିବା ପାଇଁ ଆର୍ଥିକ ସହାୟତାର ବ୍ୟବସ୍ଥା ମଧ୍ୟ କରିଥିଲେ । ଯୌତୁକ ପ୍ରଥାର ସମୂଳେ ବିନାଶ ନିମନ୍ତେ ବିଜୁବାବୁଙ୍କର ଆନ୍ତରିକ ଉଦ୍ୟମ ପାଇଁ ନାରୀ ସମାଜ ସର୍ବଦା ଶ୍ରଦ୍ଧାର ସହିତ ତାଙ୍କୁ ସ୍ମରଣ କରୁଥିବ । ବିବାହ ଖର୍ଚ୍ଚ ୨୫ ହଜାର ଟଙ୍କା ମଧ୍ୟରେ ସୀମିତ ରଖିବାକୁ ବିଜୁବାବୁ ପ୍ରଶାସନିକ ନିର୍ଦ୍ଦେଶ ଦେଇଥିଲେ ।

### ଗାଁକୁ କାମ ମାଆକୁ ସମ୍ମାନ

ଓଡ଼ିଶାର ପ୍ରତ୍ୟେକ ଗ୍ରାମର ସର୍ବାଙ୍ଗୀନ ଉନ୍ନତି ଥିଲା ବିଜୁବାବୁଙ୍କର ସ୍ୱପ୍ନ । ଗ୍ରାମାଞ୍ଚଳର ଜନସାଧାରଣଙ୍କ ଅର୍ଥନୈତିକ ବିକାଶ ଉପରେ ବିଜୁବାବୁ ବିଶେଷ ଗୁରୁତ୍ୱ ଆରୋପ କରୁଥିଲେ । ବିଜୁବାବୁଙ୍କ ମୁଖ୍ୟମନ୍ତ୍ରିତ୍ୱ ସମୟରେ ଗ୍ରାମର ଦରିଦ୍ର ଜନସାଧାରଣଙ୍କୁ କାମ ସୃଷ୍ଟି କରିବା ଉଦ୍ଦେଶ୍ୟରେ ଅନେକ ସରକାରୀ ଯୋଜନାମାନ ପ୍ରଣୟନ କରାଯାଇଥିଲା । ଗ୍ରାମାଞ୍ଚଳରେ କୃଷି, ମତ୍ସ୍ୟଚାଷ, ପଶୁପାଳନ ଓ ଅନ୍ୟାନ୍ୟ କୁଟୀରଶିଳ୍ପ ମାଧ୍ୟମରେ ଜନସାଧାରଣଙ୍କ ଅର୍ଥନୈତିକ ଅଭିବୃଦ୍ଧି ନିମନ୍ତେ ବିଜୁବାବୁଙ୍କର ଉଦ୍ୟମ ପ୍ରଶଂସନୀୟ । ଗାଁର ଉନ୍ନତି ସହିତ ମାଆମାନଙ୍କୁ ସମ୍ମାନ ଦେବା ଥିଲା ବିଜୁବାବୁଙ୍କର ଇଚ୍ଛା । ମହିଳାମାନଙ୍କ ହାତରେ ୫୦ ଭାଗ କ୍ଷମତା ଅର୍ପଣ କରିବା ନିମନ୍ତେ ବିଜୁବାବୁ ଦୃଢ଼ଯୁକ୍ତି ଉପସ୍ଥାପିତ କରିଥିଲେ । ସେ ପ୍ରତ୍ୟେକ ମହିଳାଙ୍କୁ ମା'ର ସମ୍ମାନ ଦେଇ ଆସିଥିଲେ । ସେ ଅନୁଭବ କରିଥିଲେ ମହିଳାମାନଙ୍କର ଉନ୍ନତି ନ ହେବା ପର୍ଯ୍ୟନ୍ତ ଜାତି ତଥା ଦେଶ କେବେ ସମୃଦ୍ଧ ପଥରେ ଅଗ୍ରସର ହୋଇପାରିବନାହିଁ । ତେଣୁ ବିଜୁବାବୁ ମହିଳାମାନଙ୍କର, ସାମାଜିକ, ଆର୍ଥିକ ଓ ରାଜନୈତିକ ବିକାଶ ପ୍ରତି ବିଶେଷ ଦୃଷ୍ଟି ଦେବାକୁ ପରାମର୍ଶ ଦେଇଥିଲେ । ତେଣୁ ଏଥିପାଇଁ ତାଙ୍କର ଏକ ସ୍ଲୋଗାନ ଥିଲା – 'ଗାଁକୁ କାମ ମାଆକୁ ସମ୍ମାନ' । ବିଜୁବାବୁ ମାଆମାନଙ୍କ ମାଧ୍ୟମରେ ଏକ ସୁସ୍ଥ, ସୁନ୍ଦର, ସ୍ୱାଭିମାନୀ, ସାହସୀ ଓ ବୀରଜାତି ଗଢ଼ିବାରେ ସ୍ୱପ୍ନ ଦେଖିଥିଲେ । ସମ୍ପତ୍ତିରେ ମହିଳାମାନଙ୍କ ଅଧିକାର ରହୁ ନ ଥିବାରୁ ଏବଂ ଘରେ ସେମାନଙ୍କ ଅଧିକାରକୁ ସ୍ୱୀକୃତି ମିଳୁନଥିବାରୁ

ସହାୟତା ଜିନିଷ ଯାଉଥିଲା ଇଣ୍ଡୋନେସିଆ ସ୍ୱାଧୀନତା ସଂଗ୍ରାମୀଙ୍କ ପାଇଁ । ସୁକର୍ଣ୍ଣ ପରେ ହୋଇଥିଲେ ସ୍ୱାଧୀନ ଇଣ୍ଡୋନେସିଆର ପ୍ରଥମ ରାଷ୍ଟ୍ରପତି । ବିଜୁ ପଟ୍ଟନାୟକ ସୁକର୍ଣ୍ଣଙ୍କ ସହ ଏକ ନିବିଡ ସମ୍ପର୍କ ସ୍ଥାପନ କରିଥିଲେ । ଏମିତିକି ସୁକର୍ଣ୍ଣ ନିଜର ନବଜାତ କନ୍ୟାର ନାମ ପଟ୍ଟନାୟକ ଦମ୍ପତି ଦେଇଥିଲେ ମେଘାବତୀ । ଦୁଇ ପରିବାର ମଧ୍ୟରେ ପରେ ଭାବାତ୍ମକ ସମ୍ପର୍କ ସୃଷ୍ଟି ହୋଇଥିଲା । ପିତାଙ୍କ ସଜଳ ସ୍ମୃତିକୁ ମନେରଖି ମେଘବତୀ ଯଥାକ୍ରମେ ୨୦୦୪ ଓ ୨୦୦୭ ମସିହାରେ ଦୁଇଥର ଭାରତ ଆସି ଶ୍ରୀମତୀ ପଟ୍ଟନାୟକଙ୍କୁ ଭେଟିଥିଲେ ଏବଂ ବିଜୁବାବୁଙ୍କ ନବୀନ ନିବାସରେ ଭେଟିଥିଲେ । ୧୯୧୬ରୁ ୧୯୯୭– ମାତ୍ର ୮୧ ବର୍ଷଥିଲା ପ୍ରବାଦପୁରୁଷ ବିଜୁ ପଟ୍ଟନାୟକଙ୍କ ଜୀବନଚର୍ଯ୍ୟା । ତାଙ୍କ ସମସାମୟିକ ଏ ବୟସର ମଣିଷ ଏବେବି କିଛି ବଞ୍ଚିଛନ୍ତି । କିଏ କେତେବର୍ଷ ବଞ୍ଚିଲା, ତାହା ବଡ କଥା ନୁହେଁ । ଏଇଥି ପାଇଁ ପୁଣ୍ୟଶ୍ଳୋକ ଗୋପବନ୍ଧୁ କହୁଥିଲେ– 'ମାନବଜୀବନ ନୁହଇଁ କେବଳ/ବର୍ଷ ମାସ ଦିନ ଦଣ୍ଡ । କର୍ମେ ଜୀଏଁ ନର/ କର୍ମ ଏକାସିନା ଜୀବନର ମାନଦଣ୍ଡ ।' ବିଜୁବାବୁ ବସ୍ତୁତଃ ଥିଲେ ଜଣେ କର୍ତ୍ତବ୍ୟନିଷ୍ଠ ସଚ୍ଚା କର୍ମଯୋଗୀ । ସେ ଥିଲେ କୃତୀ ଓ କୀର୍ତ୍ତିର କୃତିବାସ । ସେ ଥିଲେ କରିତକର୍ମା ଏବଂ କୀର୍ତ୍ତିମାନ । ତାଙ୍କର ଜୀବନ ହିଁ ଥିଲା ତାଙ୍କର ସନ୍ଦେଶ । ସେ ନିଜେ ହିଁ ଥିଲେ ନିଜର ଉପମା ଓ ଉପମେୟ । ସେ ଥିଲେ ବିକଳ୍ପ ବିହୀନ ସବୁଠୁ ଲୋକପ୍ରିୟ ଜନନାୟକ ତାଙ୍କ ସମୟର । ବିଜୁ ପଟ୍ଟନାୟକଙ୍କୁ ଅନେକ ଭିନ୍ନ ଦୃଷ୍ଟିକୋଣରୁ ଦେଖିଛନ୍ତି । ହେଲେ ସମଧର୍ମା ରାଜନେତା, ପ୍ରାକ୍ତନ ମୁଖ୍ୟମନ୍ତ୍ରୀ ଏବଂ ସୁନାମଧନ୍ୟ ସାହିତ୍ୟିକ ଏବଂ ସମ୍ପ୍ରତି ଆସାମର ରାଜ୍ୟପାଳ ଜାନକୀ ବଲ୍ଲଭ ନିଜର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିବାକୁ ଯାଇ ତାଙ୍କୁ 'ଯଶସ୍ୱୀ ଗାନ୍ଧିକ ଅଖିଳ ମୋହନଙ୍କ ଝଡର ଇଗଲ ଓ ଧରଣୀର କୃଷ୍ଣସାର ରୂପେ ଯେଉଁ ପ୍ରତୀକାତ୍ମକ ଭିନ୍ନ–ମୂଲ୍ୟାୟନ କରିଛନ୍ତି, ତାହା ଯେଭଳି ମନଲୋଭା, ସେହିଭଳି ଅର୍ଥପ୍ରଦ ଏବଂ ପ୍ରଣିଧାନଯୋଗ୍ୟ । କେତେକ ବ୍ୟକ୍ତିଙ୍କ ତିରୋଧାନରେ ତାଙ୍କ ଅନୁପସ୍ଥିତି ବିଶ୍ୱାସ କରିହୁଏ ନାହିଁ । ବିଜୁବାବୁ ସେମାନଙ୍କ ମଧ୍ୟରୁ ଥିଲେ ଜଣେ । ଦୀର୍ଘ ୫୦ ବର୍ଷ ଧରି ଓଡ଼ିଶାର ରାଜନୈତିକ ଦୃଶ୍ୟପଟ୍ଟ ଓ ଜନମାନସକୁ ସେ ପ୍ରଭାବିତ କରି ରଖିଥିଲେ । ତାଙ୍କର ଦେଶପ୍ରେମ, ଦୁଃସାହସିକତା, ଓଡ଼ିଶା ପ୍ରତି ଗଭୀର ଅନୁରକ୍ତି ତାଙ୍କୁ ଲୋକଙ୍କ ମଧ୍ୟରେ ବାନ୍ଧି ରଖିଥିଲା । ଓଡ଼ିଆ ସୈନିକମାନଙ୍କୁ ଲକ୍ଷ୍ୟ କରି 'ଶାଳପ୍ରାଂଶୁ ବୀର ପାଇକ ପ୍ରଧାନ' ବୋଲି ଏକଦା କବି ପଦ୍ମଚରଣ ଲେଖିଥିଲେ । ସେ ଥିଲେ ଶାଳପ୍ରାଂଶୁ, ଏକ ଉତ୍ତୁଙ୍ଗ ବ୍ୟକ୍ତିତ୍ୱର ଅଧିକାରୀ । ବୀର ଓଡ଼ିଆ ଜାତିର ଏକ ଅପ୍ରତିମ ପ୍ରତୀକ । ମଝିରେ ମଝିରେ ରାଜନୈତିକ କାରଣରୁ ବିରକ୍ତିରେ ଜନଜୀବନଠୁଁ ଅଲଗା ରହିଯିବା ପାଇଁ ସେ ଚେଷ୍ଟା କରିଛନ୍ତି, ମାତ୍ର ରହିପାରି ନାହାଁନ୍ତି । କାରଣ ଜନସାଧାରଣଙ୍କ ପ୍ରବଳ ଶ୍ରଦ୍ଧା ତାଙ୍କୁ ପୁଣି ଟାଣି ଆଣିଛି । ସେ ଯାହା ଠିକ୍ ବୋଲି ମନେ କରିଛନ୍ତି, ସାରା ଦୁନିଆକୁ ସାମ୍ନା କଲେ ମଧ୍ୟ ସେ ଲଢ଼ିବା ପାଇଁ ପଛାଇ ନାହାନ୍ତି । ଏତେ ଖଣିଖାଦାନ, ପ୍ରାକୃତିକ ବୈଭବର ମାଲିକ ହୋଇ ଓଡ଼ିଆ ଜାତି ପଛରେ ପଡିଛି, ଗରିବ ହୋଇ ରହିଛି, ତାଙ୍କର ଆତ୍ମାକୁ ସବୁବେଳେ ଆନ୍ଦୋଳିତ ଓ ବ୍ୟଥିତ କରିଛି ଏବଂ ଓଡ଼ିଶାକୁ ଉଠାଇବା ପାଇଁ ସେ ସବୁବେଳେ ଉଦ୍ୟମ କରିଆସିଛନ୍ତି । ସେ ଥିଲେ ଏକ ବିପୁଳ କର୍ମପ୍ରେରଣାର ସ୍ରୋତ ଏବଂ ସେ ପ୍ରବାହର ସମ୍ପର୍କରେ ଯେ ଆସିଛି ସେ ନିଜେ ପ୍ରବାହିତ ହୋଇଯାଇଛି । ଶିଳ୍ପପତି, ମାତ୍ର ଶିଳ୍ପର ଲାଭାଂଶରେ କଳିଙ୍ଗ ପୁରସ୍କାରର ପ୍ରତିଷ୍ଠାତା । ବୈମାନିକ, ମାତ୍ର ଏକ ସନ୍ଧିକ୍ଷଣର ବିଦ୍ରୋହୀ ଇଣ୍ଡୋନେସିଆ ତତ୍କାଳୀନ ପ୍ରଧାନମନ୍ତ୍ରୀ ଓ ଉପସଭାପତିଙ୍କୁ ଭାରତକୁ ଆଣିବାରେ ଏକ ଦୁଃସାହସିକ ଦକ୍ଷତାରେ ସେ ଅଜେୟ । ରାଜନୈତିକ ନେତା, ମାତ୍ର ଅନ୍ୟର ଅନୁଗାମୀ ନହୋଇ କ୍ଷମତା ଓ ଶକ୍ତିର ଏକ ଅଧିକାରୀ ହୋଇ ରହିବାରେ ସିଏ ପ୍ରୟାସୀ । ସ୍ୱପ୍ନଦ୍ରଷ୍ଟା, ମାତ୍ର ସ୍ୱପ୍ନକୁ କାର୍ଯ୍ୟକାରୀ କରିବା ପାଇଁ ଏକ ସମୟରେ ଅସମ୍ଭବ ମନେ ହେଉଥିବା ପାରାଦ୍ୱୀପ ବନ୍ଦର, ଏକ୍ସପ୍ରେସ୍ ହାଇୱେ ନିର୍ମାଣ, ସୁନାବେଡାରେ ମିଗ୍ ବିମାନ କାରଖାନାର ପ୍ରତିଷ୍ଠା, ସ୍ୱପ୍ନର ଯେପରି ଅନ୍ତ ନାହିଁ, ଏକ ଅସୀମ ନୀଳାକାଶର ସ୍ୱପ୍ନ: ସେହିପରି ଧରାପୃଷ୍ଠରେ ଦୃଢ ଭାବରେ ରହି ନିଜର କାର୍ଯ୍ୟକ୍ରମ ପାଇଁ ଲଢ଼ିବାର ଶେଷନାହିଁ– ଏହାହିଁ ଥିଲେ ବିଜୁ ପଟ୍ଟନାୟକ । ସେ ଥିଲେ ଝଡର ଇଗଲ ଓ ମାଟିର ମୂର୍ତ୍ତିକାର ।

ବିଜୁ ପଟ୍ଟନାୟକ ଥିଲେ ଅଜେୟ ଓ ଅତୁଲ୍ୟ । ସେ ଥିଲେ ବିକଳ୍ପ ବିହୀନ ଜନନାୟକ । ସେ ଥିଲେ ଆପଣାର ଉପମା ଓ ଉପମେୟ । ମହାପ୍ରୟାଣର ୧୬ବର୍ଷ ପରେ ବି ଅବର୍ତ୍ତମାନର ବିମୂର୍ତ୍ତ ବର୍ତ୍ତମାନ ସିଏ । ଅମୃତର ମୃତ୍ୟୁ ନଥାଏ କି ଅବିସ୍ମୃତିର ବିସ୍ମୃତି ନଥାଏ । ବିଜୁ ପଟ୍ଟନାୟକଙ୍କୁ ଭୁଲିବାର ଅନ୍ୟନାମ, ଘନଘନ ଖୋଜି ହେବା । ତାଙ୍କ ପାଇଁ ପ୍ରତୀକ୍ଷାର ଅନ୍ତନାହିଁ । ରାତିବିତେ ଅଥଚ ସକାଳ ହୁଏନାହିଁ । ସେହି ପୁଣ୍ୟଶ୍ଳୋକ ଜାତିପ୍ରାଣ ଜନନାୟକଙ୍କ ୯୭ତମ ସ୍ୱନକ୍ଷତ୍ର ତିଥିର ଏହି ମହାର୍ଘ୍ୟ ଅବସରରେ ୪କୋଟି ଓଡ଼ିଆଙ୍କର ତାଙ୍କ ଉଦ୍ଦେଶ୍ୟରେ ସଶ୍ରଦ୍ଧ ପ୍ରଣିପାତ ।

୧୯୦, ସୋନାଲିକା ଏନ୍‌କ୍ଲେଭ,
ଲୁଇସ୍ ରୋଡ୍, ଭୁବନେଶ୍ୱର–୧୪

# ମହିଳା ଓ ଶିଶୁ ବିକାଶରେ ପଞ୍ଚାୟତିରାଜର ଭୂମିକା

ପ୍ରିୟମ୍ବଦା ପଟ୍ଟନାୟକ

ଦେଶର ଭବିଷ୍ୟତକୁ ଜନ୍ମ ଦେଉଥିବା ମା, ମହିଳା, ନାରୀ ଯେପର୍ଯ୍ୟନ୍ତ ଏକ ସୁସ୍ଥ, ନିରାପଦ ଶିକ୍ଷିତ, ଆତ୍ମନିର୍ଭରଶୀଳ, କୁସଂସ୍କାରମୁକ୍ତ ଜୀବନଟିଏ ନିର୍ଭୀକତାର ସହିତ ବଞ୍ଚିବାର ମୌଳିକ ଅଧିକାର ପାଉନାହିଁ, ସେପର୍ଯ୍ୟନ୍ତ କୌଣସି ସଭ୍ୟତାର ଉନ୍ନତି ସମ୍ଭବପର ନୁହେଁ।

ଏକ ଜାତି, ଏକ ରାଷ୍ଟ୍ର ତାର ଜନସଂଖ୍ୟାର ମୁଖ୍ୟ ଆଧାର ମହିଳା ଓ ଶିଶୁଙ୍କ ସର୍ବାଙ୍ଗୀନ ବିକାଶକୁ ନେଇ ବିକଶିତ ହୁଏ। ମାନବ ସମାଜ କେବଳ ପୁରୁଷର ସର୍ବୋତ୍ତମ ବିକାଶରେ ସମୃଦ୍ଧ ହୋଇନାହିଁ। ଉଭୟ ପୁରୁଷ ଓ ମହିଳାଙ୍କ ସାମାଜିକ, ଆର୍ଥିକ, ରାଜନୈତିକ, ଆଇନଗତ ଓ ନୈତିକତାର ସମାନତା ହିଁ ଆମ ରାଜ୍ୟକୁ ସମୃଦ୍ଧି ପଥରେ ଅଗ୍ରସର କରାଇଥାଏ। କିନ୍ତୁ ବର୍ତ୍ତମାନ ଆମ ରାଜ୍ୟରେ ମହିଳାମାନଙ୍କ ସ୍ଥିତି ସମଗ୍ର ଲୋକସଂଖ୍ୟାର ମାତ୍ର ୪୭.୦ ଶତାଂଶ। ଗତ କେତେବର୍ଷ ଧରି ଆମ ରାଜ୍ୟରେ ଯେପରି ଗର୍ଭ ନିରୂପଣ ଆଳରେ କନ୍ୟାଭ୍ରୂଣ ହତ୍ୟା କରାଯାଉଛି, ତାହାରି ଦୁରବସ୍ଥା ନିକଟ ଭବିଷ୍ୟତରେ ଆମ ସମସ୍ତଙ୍କୁ ଭୋଗିବାକୁ ପଡିବ। ସାମାଜିକ ପାରିବାରିକ ଜୀବନରେ ଘୋର ବୈଷମ୍ୟ ସୃଷ୍ଟି ହେବାକୁ ଯାଉଛି।

ସୁତରାଂ ଏହି ପରିପ୍ରେକ୍ଷୀରେ ଆମ ରାଜ୍ୟର ମହିଳା ଓ ଶିଶୁଙ୍କ ସର୍ବାଙ୍ଗୀନ ବିକାଶ ନିମନ୍ତେ, ମହିଳା ଓ ଶିଶୁ ବିକାଶ ବିଭାଗ ଦ୍ୱାରା ଅନେକ କ୍ରାନ୍ତିକାରି ଯୋଜନା କାର୍ଯ୍ୟକାରୀ ହେଉଛି। ସେହି ଯୋଜନାର ଚିନ୍ତାଧାରା ସମ୍ପର୍କରେ ସମ୍ୟକ୍ ଆଲୋକପାତ କରାଯାଇଛି।

ସମନ୍ୱିତ ଶିଶୁ ବିକାଶ ଯୋଜନା

ଶିଶୁ ମୃତ୍ୟୁ ହାର ଓ ମାତୃ ମୃତ୍ୟୁ ହାରର ହ୍ରାସ କରିବା ହେଉଛି ଏହି ଯୋଜନାର ଲକ୍ଷ୍ୟ ଛଅ ଗୋଟି ସେବାକୁ ନେଇ ଏହି ଯୋଜନା ଉଦ୍ଦିଷ୍ଟ, ଯାହାକି ସ୍ୱତନ୍ତ୍ର ପୁଷ୍ଟିକର କାର୍ଯ୍ୟକ୍ରମ, ପ୍ରାକ୍ ବିଦ୍ୟାଳୟ, ପ୍ରତିଷେଧକ, ସ୍ୱାସ୍ଥ୍ୟ ପରୀକ୍ଷା, ପରାମର୍ଶ ସେବା, ପୁଷ୍ଟି ଓ ସ୍ୱାସ୍ଥ୍ୟକର ଶିକ୍ଷା। ଏହି ଯୋଜନା ମାଧ୍ୟମରେ ୦-୬ ବର୍ଷ ଶିଶୁ, ଗର୍ଭବତୀ ଓ ପ୍ରସୂତି ମା'ମାନେ ଉପକୃତ ହୋଇଥାନ୍ତି। ସ୍ୱତନ୍ତ୍ର ପୁଷ୍ଟିକର କାର୍ଯ୍ୟ ଅଧୀନରେ ଅଙ୍ଗନବାଡ଼ି କେନ୍ଦ୍ରରେ ଶିଶୁଙ୍କୁ ସକାଳ ଜଳଖିଆ ମଧ୍ୟାହ୍ନରେ ରନ୍ଧା ଖାଦ୍ୟ ପ୍ରଦାନର ବ୍ୟବସ୍ଥା ରହିଛି।

ମମତା

ଗର୍ଭବତୀ ଏବଂ ପ୍ରସୂତୀ ମା'ମାନଙ୍କ ସଶକ୍ତିକରଣ ନିମନ୍ତେ ଏହି ଯୋଜନା ଉଦ୍ଦିଷ୍ଟ। ଗର୍ଭବତୀ ଓ ପ୍ରସୂତି ମା'ମାନଙ୍କ ସ୍ୱାସ୍ଥ୍ୟର ଓ ପୁଷ୍ଟିର ଉନ୍ନତି ଉଦ୍ଦେଶ୍ୟରେ ଚାରିଗୋଟି କିସ୍ତିରେ ସମୁଦାୟ ଟ୫୦୦୦/- ଅର୍ଥରାଶି ପ୍ରଦାନ କରାଯାଇଥାଏ।

ମହିଳା ଓ ଶିଶୁ ଡେସ୍କ

ମହିଳା ଓ ଶିଶୁଙ୍କୁ ନ୍ୟାୟିକ ସହାୟତା ପ୍ରଦାନ କରିବା ହେଉଛି ଏହାର ଉଦ୍ଦେଶ୍ୟ।

ଘରୋଇ ହିଂସାରୁ ମୁକ୍ତ- ୨୦୦୫ ଆଇନ୍

କୌଣସି ମହିଳା ନିଜ ସ୍ୱାମୀ କିମ୍ବା ପରିବାରରେ ଆତ୍ମୀୟ ସ୍ୱଜନଙ୍କ ଦ୍ୱାରା ହିଂସାର ଶିକାର ହୋଇଥାନ୍ତି, ସେମାନଙ୍କୁ ସୁରକ୍ଷା ପ୍ରଦାନ କରିବା ନିମନ୍ତେ ୨୦୦୫ ମସିହାରେ ଏହି ଆଇନ୍ ପ୍ରଣୟନ କରାଯାଇଛି।

ଅସହାୟ ଶିଶୁଙ୍କ ସହାୟତା

ଜରୁରିକାଳୀନ ସମୟରେ କୌଣସି ଶିଶୁର ଅସୁବିଧାକୁ ବିଚାର କରି ଆବଶ୍ୟକୀୟ ସହାୟତା ନିମନ୍ତେ ସରକାରୀ କିମ୍ବା

ବେସରକାରୀ ସଂସ୍ଥା ସହିତ ଯୋଗାଯୋଗ କରାଯାଇଥାଏ । ଏହି ସେବା ନିମନ୍ତେ ଏକ ଶୁଳ୍କ ବିହୀନ ଟେଲିଫୋନ୍‌ର ବ୍ୟବସ୍ଥା ରହିଛି, ଯାହାର ନଂ ହେଉଛି ୧୦୯୮ ।

ପୋଷ୍ୟ ସନ୍ତାନ ଗ୍ରହଣ

ଯେଉଁ ଅଭିଭାବକ ନିଃସନ୍ତାନ ଥାନ୍ତି ସେମାନଙ୍କୁ ଆଇନତଃ ସନ୍ତାନ ଗ୍ରହଣର ସୁବିଧା ଓ ସୁଯୋଗ ଏହି ଯୋଜନା ପ୍ରଦାନ କରିଥାଏ । ଏଥି ନିମନ୍ତେ ଏକ ରାଜ୍ୟସ୍ତରୀୟ ପୋଷ୍ୟ ସନ୍ତାନ ଗ୍ରହଣ ସଂସ୍ଥା ସ୍ଥାପନ କରାଯାଇଛି ।

କିଶୋରୀ ଶକ୍ତି ଯୋଜନା

ଏହି ଯୋଜନା ଝିଅଙ୍କ ବାଲ୍ୟ ବିବାହ, ଅପରିପକ୍ୱ ଗର୍ଭଧାରଣ ଓ ଅନେକ ସମସ୍ୟାକୁ ଦୂର କରିବା ପାଇଁ କିଶୋରି ବାଳିକାଙ୍କ ମଧ୍ୟରେ ଆତ୍ମବିଶ୍ୱାସ ବୃଦ୍ଧି କରାଇଥାଏ ।

ଅସହାୟ ମହିଳାଙ୍କ ଥଇଥାନ

କୌଣସି ଅଭାବନୀୟ ପରିସ୍ଥିତିର ସମ୍ମୁଖୀନ ହୋଇଥିବା ମହିଳାଙ୍କୁ ଉଦ୍ଧାର କରି ତଥା ସେମାନଙ୍କୁ ଆବଶ୍ୟକୀୟ ଦକ୍ଷତା ପ୍ରଦାନ କରି ଥଇଥାନ କରିବା ହେଉଛି ଏହି ଯୋଜନାର ଲକ୍ଷ୍ୟ । ଏଥି ନିମନ୍ତେ ରାଜ୍ୟରେ ବିଭିନ୍ନ ଜିଲ୍ଲାରେ 'ସ୍ୱଧାର ହୋମ୍' ସ୍ଥାପନ କରାଯାଇଛି ।

ମିଶନ୍ ଶକ୍ତି

ସ୍ୱୟଂ ସହାୟକ ଦଳ ମାଧ୍ୟମରେ ମହିଳାମାନଙ୍କ ସାମାଜିକ, ଅର୍ଥନୈତିକ ରାଜନୈତିକ ସ୍ଥିତିକୁ ସୁଦୃଢ଼ କରିବା ନିମନ୍ତେ ୨୦୦୧ ମସିହାରୁ ଆମ ରାଜ୍ୟରେ ଏକ ବିପ୍ଳବର ଶୁଭାରମ୍ଭ କରାଯାଇଅଛି । ଏହି ଯୋଜନା ମାଧ୍ୟମରେ ଆଜି ୫୮ ଲକ୍ଷ ୪୧ ହଜାର ମହିଳାଙ୍କୁ ନେଇ ସମୁଦାୟ ୪.୮୬ ଲକ୍ଷ ସଂଘ ସ୍ୱାବଲମ୍ବୀ ହେବା ନିମନ୍ତେ ଆଗେଇ ଆସିଛନ୍ତି ।

ସାମାଜିକ ସୁରକ୍ଷା କାର୍ଯ୍ୟକ୍ରମ

ଏହି କାର୍ଯ୍ୟକ୍ରମ ମାଧ୍ୟମରେ ଅସହାୟ, ବିଧବା, ଭିନ୍ନକ୍ଷମ, ବୃଦ୍ଧବୃଦ୍ଧାମାନଙ୍କୁ ବଞ୍ଚିବାର ରାହା ଯୋଗାଇଥାଏ । ଏହି ଯୋଜନା ଅଧୀନରେ ମଧୁବାବୁ ପେନ୍‌ସନ୍, ଇନ୍ଦିରା ଗାନ୍ଧୀ ଜାତୀୟ ବାର୍ଦ୍ଧକ୍ୟ ଭତ୍ତା, ଇନ୍ଦିରା ଗାନ୍ଧୀ ଜାତୀୟ ବିଧବା ଭତ୍ତା, ଇନ୍ଦିରା ଗାନ୍ଧୀ ଜାତୀୟ ଭିନ୍ନକ୍ଷମ ଭତ୍ତା ଏବଂ ଜାତୀୟ ପରିବାର ମଙ୍ଗଳ ଅର୍ଥରାଶି ଉପଯୁକ୍ତ ହିତାଧିକାରୀଙ୍କୁ ଚୟନ ପୂର୍ବକ ପ୍ରଦାନ କରାଯାଇଥାଏ । ବିଭିନ୍ନ ଭତ୍ତା ନିମନ୍ତେ ବିଭିନ୍ନ ବୟସ ସୀମା ଧାର୍ଯ୍ୟ କରାଯାଇଛି । କିନ୍ତୁ ଅର୍ଥରାଶିର ପରିମାଣ ପ୍ରାୟତଃ ୨୦୦ଟଙ୍କା ।

ଏହି ସମାପ୍ତ ସୁଦୂର ପ୍ରସାରୀ ଯୋଜନାର ଏକ ସମନ୍ୱୟ ପଞ୍ଚାୟତିରାଜ ବିଭାଗର ସମନ୍ୱିତ ରୂପ ପାଇଁ ବିଶେଷ ଫଳପ୍ରଦ ହୋଇପାରିଛି । ଉଦାହରଣ ସ୍ୱରୂପ ପଲ୍ଲୀସଭା ଓ ଗ୍ରାମସଭାରେ ମହିଳାମାନଙ୍କ ନିଷ୍ପତ୍ତି ନେବା, ସମସ୍ୟା ଉପସ୍ଥାପନ ଓ ମତବ୍ୟକ୍ତ କରିବାର ଅଧିକାର ଓ ସହଭାଗିତା ଯୋଗୁଁ ଗ୍ରାମରୁ ଜିଲ୍ଲାସ୍ତରରେ ଏକ ଉଲ୍ଲେଖନୀୟ ପରିବର୍ତ୍ତନ ଆସିଛି ।

ଗ୍ରାମର ପୁରୁଷ ଓ ମହିଳାଙ୍କୁ ଆଜି ଆଉ ଦାଦନ ଖଟିବାକୁ ସୁଦୂର ବମ୍ବେ, ରାଜସ୍ଥାନ, ସୁରଟ୍, ଦିଲ୍ଲୀ ଯିବାକୁ ପଡୁନାହିଁ । ୧୦୦ ଦିନର କାମ ୧୦୦ ଦିନର ମଜୁରୀ ଅନ୍ତତଃ ନିଶ୍ଚିତ କରି ଦେଇଛି ଗ୍ରାମର ପ୍ରତ୍ୟେକ ପରିବାରର ଆର୍ଥିକ ମାନଦଣ୍ଡକୁ ।

ପଞ୍ଚାୟତିରାଜ ବ୍ୟବସ୍ଥାରେ ପଚାଶ ଶତାଂଶ ମହିଳାଙ୍କ ଯୋଗଦାନ ପଞ୍ଚାୟତିରାଜ ଦିଗନ୍ତକୁ ଏକ ନୂତନ ଦିଗ୍‌ଦର୍ଶକ ପ୍ରଦାନ କରିଛି । ଯାହା ଫଳରେ ଗାଁର ପ୍ରତି ଘରେ ଘରେ ଆଣି ଦେଇଛି ବଞ୍ଚିବାର ଶୈଳୀରେ ଏକ ନୂତନ ମହକ ଓ ବିଶ୍ୱାସ ।

ଆମ ରାଜ୍ୟରେ ମହିଳା ଓ ଶିଶୁଙ୍କୁ ଏକ ନିରାପଦ, ଶୈକ୍ଷିକ, ସୁସ୍ଥ ମନ ନେଇ ଜିଇଁବା ପାଇଁ ପଞ୍ଚାୟତିରାଜ ବିଭାଗ ସମସ୍ତ ସମ୍ଭାବନା ଓ ସ୍ୱପ୍ନକୁ ସାକାର କରିପାରିଛି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ରାଜ୍ୟ ଗ୍ରାମ୍ୟ ଉନ୍ନୟନ ପ୍ରତିଷ୍ଠାନ
ଭୁବନେଶ୍ୱର



# ପଞ୍ଚାୟତିରାଜ ବ୍ୟବସ୍ଥାରେ ଗ୍ରାମସଭା

ସୁରେନ୍ଦ୍ରନାଥ ତ୍ରିପାଠୀ

ଦେଶର ଗ୍ରାମାଞ୍ଚଳରେ ସରକାରୀ ଯୋଜନା କାର୍ଯ୍ୟକ୍ରମଗୁଡ଼ିକର ସଫଳ ରୂପାୟନ କ୍ଷେତ୍ରରେ ଗ୍ରାମସଭାର ଏକ ମହତ୍ୱପୂର୍ଣ୍ଣ ଭୂମିକା ରହିଛି । ଅନ୍ୟ ଭାଷାରେ କହିବାକୁ ଗଲେ, ଲୋକମାନଙ୍କ ନିକଟରେ ସରକାରୀ ସୁବିଧା ସୁଯୋଗ ପହଞ୍ଚାଇ ସେମାନଙ୍କର ଓ ଗ୍ରାମାଞ୍ଚଳର ସମୂହ ବିକାଶ ସାଧନର ଏକ ବଳିଷ୍ଠ ଆୟୁଧ ହେଉଛି ଏହି ଗ୍ରାମସଭା । ସ୍ୱାୟତ୍ତ ଶାସନ ଏବଂ ଗ୍ରାମପଞ୍ଚାୟତର ସ୍ୱଚ୍ଛ ଓ ଦାୟିତ୍ୱ ସହ କାର୍ଯ୍ୟ ସଂପାଦନାରେ ଏହା ମୁଖ୍ୟ ସାଧନ ଅଟେ । ଏହା ଏଭଳି ଏକ ମଞ୍ଚ ଯାହା ପ୍ରତ୍ୟକ୍ଷ ଅଂଶଗ୍ରହଣଭିତ୍ତିକ ଗଣତନ୍ତ୍ର ବ୍ୟବସ୍ଥାକୁ ସୁନିଶ୍ଚିତ କରାଇଥାଏ । ଏହା ଦରିଦ୍ର, ଉପେକ୍ଷିତ ତଥା ମହିଳା ନିର୍ବିଶେଷରେ ସମସ୍ତ ନାଗରିକଙ୍କୁ ନିଜର ମତପ୍ରଦାନ ତଥା ପଞ୍ଚାୟତଦ୍ୱାରା ପ୍ରସ୍ତାବିତ ଯୋଜନାଗୁଡ଼ିକର ସମୀକ୍ଷା, ପ୍ରତ୍ୟାଖ୍ୟାନ ବା ଗ୍ରହଣ କରିବା ପାଇଁ ସମାନ ସୁଯୋଗ ଦେଇଥାଏ ।

ସମ୍ବିଧାନର ଧାରା-୨୪୩(କ)ଦ୍ୱାରା ଗ୍ରାମସଭାର ସଂଜ୍ଞା ଦିଆଯାଇଅଛି । ଏହି ସଂଜ୍ଞା ଅନୁଯାୟୀ ଏକ ନିର୍ଦ୍ଧାରିତ ଗ୍ରାମପଞ୍ଚାୟତର ସମସ୍ତ ପଞ୍ଜିକୃତ ଭୋଟରଙ୍କର ସାଧାରଣ ସଭାକୁ ଗ୍ରାମସଭା କୁହାଯାଏ । ଗ୍ରାମସଭାର ଦାୟିତ୍ୱ ଓ କ୍ଷମତା ରାଜ୍ୟମାନଙ୍କର ବିଧାନସଭାଦ୍ୱାରା ନିର୍ଦ୍ଧାରିତ ହୋଇଥାଏ । ଏଣୁ ଅନ୍ୟାନ୍ୟ ରାଜ୍ୟରେ ଗ୍ରାମସଭାର ଦାୟିତ୍ୱ ଭିନ୍ନ ଭିନ୍ନ ହୋଇଥାଏ । ୧୯୯୬ ମସିହାରେ ଆଦିବାସୀ ଅଞ୍ଚଳକୁ ପଞ୍ଚାୟତ ସମ୍ପ୍ରସାରଣ ନିୟମଦ୍ୱାରା କେତେକ ବିଶେଷ ଅଧିକାର ଓଡ଼ିଶା ସମେତ ୯ଟି ରାଜ୍ୟକୁ ଦିଆଯାଇ ଅନୁସୂଚିତ ଅଞ୍ଚଳରେ ପରିଣତ କରାଯାଇଥିଲା । ଏହି ଆଇନ ଅନୁଯାୟୀ ମଦ ବିକ୍ରୀ ଓ ସେବନ, ଭୂମି ଅଧିଗ୍ରହଣ ଓ ପୁନର୍ବାସ, ଆଦିବାସୀଙ୍କୁ ଋଣପ୍ରଦାନ ତଥା ଗ୍ରାମ୍ୟ ବଜାର ପରିଚାଳନା ସମ୍ବନ୍ଧରେ ଗ୍ରାମସଭା ଆଲୋଚନା କରି ନିଷ୍ପତ୍ତି ନେଇପାରିବ । ଜୁଲାଇ ୨୦୦୪ରେ କଲିକତାରେ ହୋଇଥିବା ବିଭିନ୍ନ ରାଜ୍ୟର ପଞ୍ଚାୟତିରାଜ ମନ୍ତ୍ରିମାନଙ୍କ ବୈଠକରେ ଆଲୋଚନା କରାଯାଇ ଉପଲବ୍ଧି କରାଯାଇଥିଲା ଯେ ଗ୍ରାମସଭା ହିଁ ଏକ ସୁଶାସନ ପଞ୍ଚାୟତ ବ୍ୟବସ୍ଥା ପାଇଁ ଦୃଢ଼ ମୂଳଦୁଆ ପକାଇପାରିବ । ତେଣୁ ସେହି ବୈଠକରେ ଗ୍ରାମ ତଥା ୱାର୍ଡ଼ ସଭାର ନିୟମିତ ବୈଠକ ଡକାଯାଇ ସେମାନଙ୍କୁ ଯଥେଷ୍ଟ ଦାୟିତ୍ୱ ତଥା କ୍ଷମତାପନ୍ନ କରିବାପାଇଁ ସୁପାରିଶ କରାଯାଇଥିଲା । ସ୍ଥାନୀୟ ସ୍ୱଶାସନ ବ୍ୟବସ୍ଥାକୁ ସୁଦୃଢ଼ କରିବା ପାଇଁ ହେଲେ ଏକ ସ୍ୱଚ୍ଛ କାର୍ଯ୍ୟକ୍ଷମ ହିଁ ଗ୍ରାମସଭା । ପ୍ରତ୍ୟେକ ଗ୍ରାମବାସୀଙ୍କୁ ନିଜ ଗ୍ରାମର ବିକାଶ ପାଇଁ ଯୋଜନା କରିବାକୁ ଓ ସେ ସମ୍ବନ୍ଧିତ ନିଷ୍ପତ୍ତି ନେବା ତାହା ସୁଯୋଗ ଦେଇଥାଏ । ଗ୍ରାମସଭାଦ୍ୱାରା ସ୍ୱଶାସନ ବ୍ୟବସ୍ଥା ଓ ସାମାଜିକ ସମୀକ୍ଷା ପଞ୍ଚାୟତ ବ୍ୟବସ୍ଥାକୁ ଅଧିକ ସୁଦୃଢ଼ ଓ କ୍ଷମତାପନ୍ନ କରିପାରିବ । ଏହା ପ୍ରଶାସନିକ ସଂସ୍କାର କମିଶନଙ୍କ (Administrative Reform Commission) ଦ୍ୱିତୀୟ ରିପୋର୍ଟରେ କୁହାଯାଇଅଛି ।

ମୁଖ୍ୟମନ୍ତ୍ରୀମାନଙ୍କୁ ଅଭିଭାଷଣ ଦେବା ଅବସରରେ ଭାରତର ପ୍ରଧାନମନ୍ତ୍ରୀ ସ୍ୱୀକାର କରିଥିଲେ ଯେ ଗ୍ରାମସଭାଦ୍ୱାରା ପଞ୍ଚାୟତର ସମୀକ୍ଷା, ଶାସନ ବ୍ୟବସ୍ଥାକୁ ନାଗରିକଙ୍କୁ ଉତ୍ତରଦାୟୀ କରିଥାଏ । ଆଜିର ବିକଶିତ ସୂଚନା ପ୍ରଯୁକ୍ତି ବିଦ୍ୟାର ଉପଯୁକ୍ତ ବ୍ୟବହାରଦ୍ୱାରା ପଞ୍ଚାୟତ ବ୍ୟବସ୍ଥାକୁ ଅଧିକ କାର୍ଯ୍ୟକ୍ଷମ କରାଇବାର ସୁଯୋଗ ଆସିଛି । ଏହି ସୁଯୋଗର ଉପଯୁକ୍ତ ବିନିଯୋଗ ଓ ବିସ୍ତାର କରାଯିବା ଅତି ଆବଶ୍ୟକ ।

ତେବେ ଗ୍ରାମସଭା ଏତେ ବଡ଼ ମର୍ଯ୍ୟାଦା ପାଇଥିବାବେଳେ ଏବଂ ଏହାର ଅତି ମହତ୍ୱପୂର୍ଣ୍ଣ ଭୂମିକା

ରହିଥିବାବେଳେ, ସାଧାରଣତଃ ଅନେକ ସମୟରେ ଦେଖିବାକୁ ମିଳୁଛି ଯେ ଗ୍ରାମସଭା ବୈଠକ ନିୟମିତଭାବେ ହେଉ ନାହିଁ । ଯଦିବା ହେଉଛି, ସଭାକୁ ବହୁତ କମ୍ ଲୋକ ଆସୁଛନ୍ତି । ବିଶେଷତଃ ମହିଳା ଓ ବଞ୍ଚିତ ଅବହେଳିତ ଶ୍ରେଣୀର ଲୋକଙ୍କ ଉପସ୍ଥିତି ବହୁତ କମ୍ ରହୁଛି । ସେହିପରି ବୈଠକରେ, ପଞ୍ଚାୟତଦ୍ୱାରା ଅନୁମୋଦନ ପାଇଁ ପଠାଯାଇଥିବା ପ୍ରସ୍ତାବଗୁଡ଼ିକ ଉପରେ ସାମାନ୍ୟ ଆଲୋଚନା କରାଯାଉଛି । ସାଧାରଣ ଜନତା ତଥା ଅବହେଳିତ ଲୋକଙ୍କ ସ୍ୱାର୍ଥ ସମ୍ବଳିତ ପ୍ରସଙ୍ଗଗୁଡ଼ିକ ଉପରେ ମଧ୍ୟ ଅନେକ ସମୟରେ ଆଲୋଚନା ହେଉ ନାହିଁ । ସେହିପରି 'ପେସା' ଆଇନ ସୂତ୍ରରେ ରାଜ୍ୟଗୁଡ଼ିକ ଆବଶ୍ୟକ ନିୟମ ପ୍ରଣୟନ କରିବା ଦିଗରେ ମଧ୍ୟ ଅତି ମନ୍ଥର ଗତିରେ କାର୍ଯ୍ୟ କରୁଛନ୍ତି । ଏହିସବୁ କାରଣରୁ ଅନୁସୂଚିତ ଅଞ୍ଚଳଗୁଡ଼ିକରେ ବାମପନ୍ଥୀ ଆତଙ୍କବାଦୀ କାର୍ଯ୍ୟକଳାପ ମୁଣ୍ଡ ଟେକି ଉଠୁଛି ।

ଏହି ପରିପ୍ରେକ୍ଷୀରେ ଗ୍ରାମସଭା, ୱାର୍ଡ଼ସଭା ଓ ଅନ୍ୟ ଗଣ ସଭାଗୁଡ଼ିକୁ ସକ୍ରିୟ ଓ ଫଳପ୍ରଦ କରିବାର ତୁରନ୍ତ ଆବଶ୍ୟକତା ରହିଛି । ଗ୍ରାମାଞ୍ଚଳ ସ୍ୱାୟତ୍ତ ଶାସନ ବ୍ୟବସ୍ଥାକୁ ଫଳପ୍ରଦ କରିବା ପାଇଁ ଗ୍ରାମସଭାଗୁଡ଼ିକୁ ସକ୍ରିୟ ଓ ଶକ୍ତିଶାଳୀ କରିବା ଏବେ ଏକ ଆହ୍ୱାନ ହୋଇଛି । ଏଥିପାଇଁ ଗ୍ରାମସଭାଗୁଡ଼ିକର ନିୟମିତ ଓ ଫଳପ୍ରଦ ବୈଠକ ହେବା ଆବଶ୍ୟକ । ରାଜ୍ୟଗୁଡ଼ିକ ଏଥିପାଇଁ ସେମାନଙ୍କ ପଞ୍ଚାୟତ ଆଇନରେ ଉପଯୁକ୍ତ ବିଧିବ୍ୟବସ୍ଥା ରଖିବା ଉଚିତ । ଆଦର୍ଶ ପଞ୍ଚାୟତ ଓ ଗ୍ରାମ ସ୍ୱରାଜ ଚିଠା ଆଇନରେ ଗ୍ରାମସଭା ଓ ୱାର୍ଡ଼ସଭାଗୁଡ଼ିକ ପାଇଁ ବିଭିନ୍ନ କ୍ଷମତା ରଖାଯାଇଛି । ବିଭିନ୍ନ କାର୍ଯ୍ୟକ୍ରମ, ଯୋଜନା, ସୁପ୍ରଥା ଏବଂ ସାଧାରଣ ଲୋକଙ୍କ ସ୍ୱାର୍ଥ ସମ୍ବଳିତ ବିଷୟଗୁଡ଼ିକ ଉପରେ ସୂଚନା ତଥା ଜ୍ଞାନ ବିତରଣରେ ଗ୍ରାମସଭା ଏକ ଫଳପ୍ରଦ ମଞ୍ଚ ହୋଇପାରିବ । ଗ୍ରାମସଭାରେ ଜୀବନର ଗୁଣବତ୍ତା ଓ ସହସ୍ରାବ୍ଦ ବିକାଶ ଲକ୍ଷ୍ୟ, ସାମାଜିକ ନିରାଶ, ଲିଙ୍ଗଗତ ନ୍ୟାୟ ପ୍ରଦାନ, କନ୍ୟାଭ୍ରୁଣ ହତ୍ୟା, କୃଷିର ବିବିଧକରଣ ଭଳି ବିଷୟଗୁଡ଼ିକ ଉପରେ ମତ ବିନିମୟ କରାଯାଇପାରିବ । ସେହିପରି ଗ୍ରାମସଭାରେ ସରକାରୀ ଅଧିକାରୀମାନେ ସ୍କୁଲ, ଚିକିତ୍ସାଳୟ, ଅଙ୍ଗନୱାଡ଼ି କେନ୍ଦ୍ର ଓ ଅନ୍ୟ ସ୍ଥାନୀୟ ସଂସ୍ଥାଗୁଡ଼ିକର କାର୍ଯ୍ୟକୁ ନିରୀକ୍ଷଣ କରିପାରିବେ । ଗ୍ରାମପଞ୍ଚାୟତ ସ୍ଥାୟୀ କମିଟିଗୁଡ଼ିକର ରିପୋର୍ଟ ଉପରେ ମଧ୍ୟ ଅନୁଧ୍ୟାନ କରାଯାଇପାରିବ । ଭୋଟରମାନଙ୍କୁ ସୂଚନା ଅଧିକାର ଆଇନ ବ୍ୟବସ୍ଥାଗୁଡ଼ିକ ସହିତ ପରିଚିତ କରାଇବାରେ ମଧ୍ୟ ଗ୍ରାମସଭା ଏକ ଫଳପ୍ରଦ ମଞ୍ଚ ବା ମାଧ୍ୟମ ହୋଇପାରିବ ।

ଶାସନ ସଚିବ
ପଞ୍ଚାୟତିରାଜ ବିଭାଗ, ଭୁବନେଶ୍ୱର



# ଉତ୍ତୀର୍ଣ୍ଣ-ଉତ୍କଳୀୟତାର ଉତ୍ତୁଙ୍ଗ-ଉଦ୍‌ବୋଧକ ଉତ୍କଳଗୌରବ ମଧୁସୂଦନ

ଡକ୍ଟର ରବୀନ୍ଦ୍ର କୁମାର ଦାସ

'ତୁମେ' କିମ୍ବା 'ମୁଁ' ଅତି ଛୋଟ ବୟସରେ ପୁଣି ବେଶ୍ ଛୋଟ କ୍ଲାସରେ ଯଦି 'ତୁମପରି ଛୋଟ ପିଲାଟିଏ କବିତାଟି ପଢିଥିବା, ତେବେ ସେଇ ଛୋଟ ପିଲା ବଡ ହୋଇ ମଧୁବାରିଷ୍ଟର ବୋଲାଇବା' ଏବଂ 'ଦେଶ ପାଇଁ କେତେ କାମ କରି (ସିଏ) କାଳ କାଳ ଯଶ ରଖିଯିବା' କଥା ମଧ ଏଇ ବୟସ୍କ ଜୀବନରେ କେବେ ବି ବିସ୍ମରଣ ହୋଇ ନଥିବା କବିତାଟି ତୃତୀୟ ଶ୍ରେଣୀ ସାହିତ୍ୟ ବହିରେ କବିତା ବିଭାଗରେ ସ୍ଥାନିତ ହୋଇଥିଲା । କବିତାଟି ଯେବେ ବି ମନେପଡେ- ସେବେ ସାଙ୍ଗେ ସାଙ୍ଗେ ମଧୁବାବୁଙ୍କ ନାକତଳ ମୋଟାନିଶ, ମୁଣ୍ଡ ଉପରେ ଭିଡା ଯାଇଥିବା ପଗଡି ଓ ତାଙ୍କ ହାଡୁଆ ମୁହଁଟି ମୋ ସ୍ମୃତିରେ ସ୍ୱତଃ ଭାସି ଉଠେ । ମୋ ଗାଁ ଓ ତାଙ୍କ ଗାଁ କଥା ଭାରି ମନେ ପଡେ । କାରଣ ତାଙ୍କ ଗାଁରେ ଯେମିତି କଞ୍ଚା ସଡକ ଥିଲା, ମୋ ଗାଁରେ ବି ସେମିତି କଞ୍ଚା ସଡକ ଥିଲା । ଝଡି ଛାଡିଯିବା ପରେ ସେ ଚାଟଶାଳୀ ଯାଉଥିଲେ, ମୁଁ ବି ସ୍କୁଲ ଯାଉଥିଲି । ବାଟେ ଯାଉଁ ଯାଉଁ କାଦୁଅରେ ତାଙ୍କ ଗୋଡ ଖସି ଯାଇଥିଲା ଓ ସେ ମୁହଁମାଡି ତଳେ ପଡିଯାଇଥିଲେ, ମୁଁ ବି ପଡିଯାଇ ଥିଲି । ସେ ପାଣି କାଦୁଅରେ ସଡ ସଡ ହୋଇ ଗୁରୁଜୀଙ୍କ ଆଗରେ ଉଭା ହୋଇଥିଲେ, ମୁଁ ବି କାଦୁଅ ଆଉ ପାଣି ସଡ ସଡ ପ୍ୟାଣ୍ଟସାର୍ଟ ପିନ୍ଧି ଅନେକ ଥର ମାଡ ଭୟରେ ସ୍କୁଲରେ ହାଜର ହୋଇଯାଉଥିଲି । କବିତାରେ ବର୍ଣ୍ଣିତ ଅଧିକାଂଶ ଘଟଣା ମୋ ଛୋଟ ବେଳର ସ୍କୁଲ ଯିବା ଘଟଣା ସହିତ ପ୍ରାସଙ୍ଗିକତା ରକ୍ଷା କରି ଆସୁଥିଲେ ମଧ ଗୋଟିଏ ଘଟଣା ଏପର୍ଯ୍ୟନ୍ତ ସମାନ ହୋଇ ପାରିଲା ନାହିଁ । ଭବିଷ୍ୟତରେ ହେବ କି ନାହିଁ ମଧ ମୁଁ କହିପାରିବି ନାହିଁ ଏବଂ ସେଇଟି ହେଉଛି- 'ହେଲା ଦଶହରା ଛୁଟି ବେଳ/ସାଥୀ ପିଲା ଡାକି କଲା ମେଳ/ ବାଲି ଗୋଡି ମାଟି ପକାଇ ସଭିଏଁ/ ଗାଁ ବାଟ କଲେ ସମତୁଲ' ପ୍ରସଙ୍ଗ । ସେ କଚାଡି ପଡିଛନ୍ତି- ମୁଁ ବି କଚାଡି ପଡିଛି । ସେ ପାଣି କାଦୁଅ ସଡ ସଡ ହେଇଛନ୍ତି- ମୁଁ ବି ହୋଇଛି । କିନ୍ତୁ ଗାଁରେ ସେଇ କଞ୍ଚା ସଡକକୁ ମୁଁ ନିଜେ କିମ୍ବା ସାଥୀ ପିଲା ମେଳରେ ସମତୁଲ କରିପାରି ନାହିଁ । ବଡ ହେଲା ପରେ ବି ସେମିତି କିଛି ସାମୂହିକ କାର୍ଯ୍ୟ ଗାଁ ପାଇଁ କିମ୍ବା ପଞ୍ଚାୟତ ପାଇଁ କରିଥିବାର କାହିଁ ମୋର ମନେ ପଡୁନାହିଁ । ଛୋଟବେଳେ ଦଶହରା ଛୁଟି ହେଲେ ବହିବସ୍ତାନି ଧାନଭାଡି ତଳକୁ ଛାଟି ଦେଇ ସାଙ୍ଗ ପିଲା ସହ ମିଶି ଟବକା ପକାଇ ଚେଙ୍ଗ ଧରୁଥିଲି, ନହେଲେ ସହରକୁ ଦୁର୍ଗାପୂଜା ଦେଖିବାକୁ ଚାଲି ଯାଉଥିଲି । ଏବେ ଦଶହରା ଛୁଟିରେ ଶ୍ୱଶୁର ଘରେ ଆଡ୍‌ଡା, ନହେଲେ ନିଜ ବହି ପାଇଁ ଡି.ଟି.ପି. କରେକ୍ସନ, ନହେଲେ ସାହିତ୍ୟ ନାଆଁରେ ସଭା ସମିତିରେ ଭାଷଣବାଜି । ଗାଁ କଥା, ଦେଶ କଥା କିମ୍ବା ରାଜ୍ୟ କଥା ଭାବିବାକୁ ତର ନାହିଁ । ରାସ୍ତାଘାଟ ଖରାପ ହେଲେ ଶାସନ କଳକୁ ଦୋଷ ଦେଉଛି । ପ୍ରତିକୂଳ ପରିସ୍ଥିତି ଉପୁଜିଲେ ଭାଗ୍ୟକୁ ନିନ୍ଦୁଛି ।

ମଧୁବାବୁ କିନ୍ତୁ ଏହାର ଠିକ୍ ଓଲଟା ଆଚରଣ କରୁଥିଲେ । ବାହାରକୁ ନଦେଖି ସେ ଦେଖୁ ଥିଲେ ଭିତରକୁ । ଭିତରୁ ପ୍ରେରଣା ଲାଭ କରି ବାହାରର ଅସଜାଡିତତାକୁ ସଙ୍ଗତିଯୁକ୍ତ କରିବା ପାଇଁ ସେ ଅହରହ ଉଦ୍ୟମ କରୁଥିଲେ । ଉତ୍କଳୀୟମାନଙ୍କ ମଧରେ କର୍ତ୍ତବ୍ୟ ଜ୍ଞାନ ଏବଂ କର୍ମ ତତ୍ପରତା ବୃଦ୍ଧି କରିବା ଉଦ୍ଦେଶ୍ୟରେ ସେ ବକ୍ତୃତା ପ୍ରଦାନ କରୁଥିଲେ, ସଙ୍ଗୀତ ରଚନା କରୁଥିଲେ, ବିଭିନ୍ନ ଲେଖାମାନ ପ୍ରସ୍ତୁତ କରି ଜାତୀୟ ଚେତନାରେ ଆମୂଳ ଚୂଳ ପରିବର୍ତ୍ତନ ଆଣିବାରେ ପ୍ରୟାସ କରୁଥିଲେ । ମଧୁବାବୁ ଯାହା କହୁଥିଲେ, ତାହା କରୁଥିଲେ । ଯାହା କରୁ ନଥିଲେ, ତାହା କହୁ ନଥିଲେ । ତାଙ୍କର ଆଚରଣ ଏବଂ ଉଚ୍ଚାରଣ ସମାନ ଥିଲା ।

ମଧୁବାବୁ ସମୁଦାୟ ସାତୋଟି କବିତା ରଚନା କରିଛନ୍ତି । ସେଗୁଡିକ ଯଥାକ୍ରମେ ୧-ଜଣାଣ, ୨- ଉତ୍କଳ ସନ୍ତାନ,

୩– ଜନନୀର ଉକ୍ତି, ୪– ସନ୍ତାନର ଉକ୍ତି, ୫– ସମ୍ମିଳନୀ, ୬– ଜାତି ଇତିହାସ ଏବଂ ୭– ଏ ଭବେ ପାଇବ କାହିଁ ? ଅନ୍ୟତମ । ଏଗୁଡିକ ମୁକୁର, ଆଶା, ଉତ୍କଳ ସମ୍ମିଳନୀ ପତ୍ରପତ୍ରିକାଦିରେ ପ୍ରକାଶ ପାଇଥିଲା । କବିତାଗୁଡିକ ତାଙ୍କ ସଚଳ ଜୀବନର ଅଭୁଲା ଆତ୍ମଲିପି କହିଲେ ଅତ୍ୟୁକ୍ତି ହେବ ନାହିଁ । ଉତ୍କଳୀୟତା ସମ୍ବନ୍ଧରେ ତୀବ୍ର ସଚେତନଶୀଳତା ସୃଷ୍ଟି କରିବା ପାଇଁ ସେ ଏଗୁଡିକରେ ଆହ୍ୱାନ କରିଛନ୍ତି । ଭାଷାର କାରିଗରୀ ମଧ୍ୟରେ ଏଗୁଡିକ ଅତ୍ୟନ୍ତ ଡଉଲ ଡାଉଲ ହୋଇ ନଥିଲେ ମଧ୍ୟ ଭାବର ଗାମ୍ଭୀର୍ଯ୍ୟରେ ଏଗୁଡିକ ବେଶ ପ୍ରଭାବଶାଳୀ । ଉତ୍କଳୀୟ ଜାତୀୟତାବୋଧ, ଭାଷିକ ସଂକଟ, ତତ୍କାଳିକ ସ୍ୱାର୍ଥପରତା, ଐତିହ୍ୟ, ଜାତୀୟ ନିସ୍ପୃହତା, ମନ୍ଦିର ଶିଳ୍ପ ପ୍ରଭୃତିର ପ୍ରତ୍ୟକ୍ଷ ପ୍ରତିଫଳନ କବିତାଗୁଡିକରେ ଘଟିଛି । ଏଗୁଡିକ ସଂଖ୍ୟାରେ ସୀମିତ ହେଲେ ହେଁ ଚେତନାସ୍ତରୀୟ ଉଚ୍ଚାରଣ ଦୃଷ୍ଟିରୁ ଅତ୍ୟନ୍ତ ଉଚ୍ଚକୋଟୀର ମନେହୁଏ । ସୁପ୍ତ ଉତ୍କଳୀୟମାନଙ୍କ ମନ ପ୍ରାଣରେ ଅସରନ୍ତି ଜାତୀୟ ସଚେତନତା ଭରିଦେବା ଉଦ୍ଦେଶ୍ୟରେ କବିତାଗୁଡିକ ରଚିତ ।

ମଧୁସୂଦନ ଦାସଙ୍କ ରଚନା ସମଗ୍ର ମଧ୍ୟରେ ଅଧିକାଂଶତଃ ହେଉଛି ଉତ୍କଳ ସମ୍ମିଳନୀର ବିଭିନ୍ନ ଅଧିବେଶନ ଉପଲକ୍ଷ୍ୟେ ତଥା ତତ୍ ସମ୍ବନ୍ଧୀୟ ପଦତ୍ତ ଅଭିଭାଷଣ ଏବଂ ରଚନା ବିଶେଷ । କବିତା ଭଳି ଏଗୁଡିକରେ ବି ସେଇ ଏକଇ ସ୍ୱର, ଏକଇ ଆହ୍ୱାନ । ଉତ୍କଳ ସମ୍ମିଳନୀ ସମ୍ପର୍କିତ ଅଭିଭାଷଣ ବ୍ୟତୀତ ଅନ୍ୟାନ୍ୟ ଅଭିଭାଷଣ କିମ୍ବା ତାଙ୍କ ରଚିତ ପ୍ରବନ୍ଧ ଏବଂ ଚିଠିପତ୍ରରେ ବି ସେଇ ଏକଇ ସମ୍ବେଦନ, ଏକଇ ଆବେଦନ । ସର୍ବତ୍ର ଏକ ଉତ୍ତୀର୍ଣ୍ଣ ଉତ୍କଳୀୟତାର ଭାବାଦର୍ଶର ମନ୍ଦାକିନୀ ଧାରା ପ୍ରବହମାନ ଏବଂ ସର୍ବତୋଭାବେ ଉତ୍କଳୀୟ ଜାତିର ଚରମ ଅଭ୍ୟୁତଥାନ ନିମିତ୍ତ ଉଦ୍‌ବୋଧନ ତଥା ଉତ୍କଳୀୟ ଜାତୀୟତାର ପ୍ରାଣ ପ୍ରତିଷ୍ଠା ପାଇଁ ଆପ୍ରାଣ ଉଦ୍ୟମ । ଏସବୁ ପାଠ କଲେ ତୁମେ ଭାବିତ ହେବ ଯେ– ମଧୁବାବୁ ସର୍ବାନ୍ତକରଣରେ ଉତ୍କଳ ମାତାର ସେବା ପାଇଁ ଜନ୍ମ ହୋଇଥିଲେ ଏବଂ ପ୍ରାଣ ତ୍ୟାଗ ମଧ୍ୟ କରିଥିଲେ । ସମଗ୍ର ଜୀବନକୁ ସେ ତିଳ ତିଳ କରି ଉତ୍କଳ ପାଇଁ ଉତ୍ସର୍ଗ କରି ଯାଇଥିଲେ । ଛୋଟ ପିଲାବୟସରୁ ଆରମ୍ଭ କରି ବୃଦ୍ଧାବସ୍ଥା ପର୍ଯ୍ୟନ୍ତ ସେ ସେଇ ଗୋଟିଏ ଚେତନାରେ ତଲ୍ଲୀନ ହୋଇ ଜୀବନ ବଞ୍ଚିଥିଲେ । ଜାତୀୟ ସ୍ୱାର୍ଥ ହିଁ ତାଙ୍କ ସମଗ୍ର ଦୈନନ୍ଦିନ ଜୀବନର ଧ୍ୟେୟ ଥିଲା ।

ପ୍ରବନ୍ଧର ଏଇ ଭାଗରେ 'ତୁମେତ୍ୱ' ଏବଂ 'ମୁଁତ୍ୱକୁ' କାହିଁକି ଓ କିପରି ଜଳାଞ୍ଜଳି ଦେଇ କେବଳ ଉତ୍କଳୀୟତ୍ୱରେ ପ୍ରତ୍ୟେକ ଉତ୍କଳୀୟ ଭାବିତ, ଗାହିତ ଓ ବାହିତ ହୋଇ ଉତ୍କଳୀୟ ତଥା ଜାତୀୟ ଜୀବନକୁ ଚରମ ଏବଂ ପରମ ଉତ୍ତୁଙ୍ଗତା ଆଡକୁ ଉଚ୍ଚାରିତ କରାଇ ପାରିବେ, ତାହାକୁ ତାଙ୍କରି ସ୍ୱରରେ, ତାଙ୍କରି ଛନ୍ଦରେ ଏବଂ ତାଙ୍କରି ମନ୍ତ୍ରରେ ମୁଁ ଅଭିସ୍ୱରିତ, ଅଭିଛନ୍ଦିତ ଏବଂ ଅଭିମନ୍ତ୍ରିତ କରାଇବା ପାଇଁ ପ୍ରୟାସ କରୁଅଛି ।

'ମହାତ୍ମା ମହମ୍ମଦ କହିଅଛନ୍ତି ଯେ ଯେତେବେଳେ ସେ ପିଲା ଥିଲେ, ସେସମୟରେ ଗୋଟିଏ ସ୍ୱର୍ଗଦୂତ ଆସି ତାହାଙ୍କ ଛାତିକୁ କାଟି ମେଲା କଲା ଓ ହୃଦୟର ପିଣ୍ଡଟି ବାହାର କରି ଆଣିଲା । ସେହି ପିଣ୍ଡରେ ଗୋଟିଏ କଳାଦାଗ ଥିଲା । ସ୍ୱର୍ଗୀୟ ଦୂତ ସେହି କଳାଦାଗଟି ଉଠାଇ ନେଇ ପିଣ୍ଡକୁ ପୁନର୍ବାର ଛାତିରେ ବସାଇ ଦେଲେ । ସେହିପରି ଆମ୍ଭେମାନେ ହୃଦୟରୁ କଳାଦାଗ ବି ଉଠାଇ ଦେବାର ଉଚିତ୍ । କଳାଦାଗଗୁଡିକ ଆଉ କିଛି ନୁହେଁ, ତାହା ଆମ୍ଭମାନଙ୍କ ଗର୍ବ ଓ ଅଭିମାନ । ଏଗୁଡିକୁ ହୃଦୟରୁ ବାହାର କରି ଦେବାକୁ ପଡିବ । (୧) ଗର୍ବ ଏବଂ ଅଭିମାନ ଯେକୌଣସି ମଣିଷକୁ ସ୍ୱାର୍ଥପର ଏବଂ ଆତ୍ମଗର୍ବୀ ସଜାଇ ଦିଏ । ଏହା ଜାତୀୟ ଉନ୍ନତିରେ ଅନ୍ତରାୟ ହୋଇ ପଥ ଓଗାଳେ । ତଦ୍ଦ୍ୱାରା ବ୍ୟକ୍ତି ନିଜର ଆତ୍ମ ପରିଚିତିକୁ ବିସ୍ମରିତି ହେବା ସହ ଜାତୀୟ ପରିଚିତିକୁ ମଧ୍ୟ ଅସ୍ପଷ୍ଟ କରି ପକାଏ । ମଧୁବାବୁଙ୍କ ଭାଷାରେ ମୁଁ ବା ତୁମ୍ଭେମାନେ କାଲି ଇହସଂସାରରୁ ଚାଲିଯିବା, କିନ୍ତୁ ଜାତି ଅମର ଓ ଚିରଜୀବୀ । ସ୍ୱାର୍ଥତ୍ୟାଗ ଓ ପ୍ରେମ ଜାତୀୟ ଉନ୍ନତିର ପ୍ରଧାନ ସହାୟ ।' ସେଥିପାଇଁ ସେ ସ୍ୱାର୍ଥମେଧ ଯଜ୍ଞରେ ଅହଙ୍କାର, ଦ୍ୱେଷ, ଈର୍ଷା, ସ୍ୱାର୍ଥ ଆଦି ବିଜାତୀୟ ଭାବକୁ ଆହୂତି ଦେଇ ଛାତିକୁ ଛାତି ମିଶାଇ ଭାଇ ଭାଇ ହୋଇଯିବା ପାଇଁ ସେ ଆହ୍ୱାନ ଦେଇଛନ୍ତି ।

ମଧୁବାବୁ ଇଉରୋପୀୟ Nation Stateର କଥା ଅନେକତ୍ର ଉଲ୍ଲେଖ କରିଛନ୍ତି । 'A Group of people with the same culture, language, etc. who have formed an independent country'. (୨) ହିଁ ସେହିଁ Nation Stateର ପ୍ରଧାନ ସ୍ୱରୂପ ଥିଲା । ୟୁରୋପୀୟମାନଙ୍କ ଅନ୍ତରରେ ତୀବ୍ର ଏବଂ ଉଗ୍ର ଜାତୀୟତାବାଦମୂଳକ ଭାବାଦର୍ଶ ପ୍ରଜ୍ୱଳିତ ଥିବାରୁ ସେମାନେ ନିଜେ ଆଧୁନିକ ହେବା ସଙ୍ଗେ ସଙ୍ଗେ ନିଜ ଭାଷା, ସାହିତ୍ୟ, ସଂସ୍କୃତି, ଚଳଣି ଆଦିକୁ ବିଶ୍ୱ ପ୍ରସାରୀ କରାଇ ପାରିଛନ୍ତି । ନିଜ ନିଜ ଭୂଖଣ୍ଡର ଜାତୀୟତାକୁ ସେମାନେ ବିଶ୍ୱରେ ଚିହ୍ନଟ ମଧ୍ୟ କରି ପାରିଛନ୍ତି ।

ଇଂରେଜ, ଫରାସୀ, ପର୍ତ୍ତୁଗୀଜ, ଓଲନ୍ଦାଜ୍, ଡଚ୍ ପ୍ରଭୃତି ୟୁରୋପୀୟ ଜାତିଗୁଡିକ ମଧ୍ୟରେ ଅନେକ ସମୟରେ ବିରୋଧ ଲକ୍ଷିତ ହୋଇଛି । ଏମାନଙ୍କର ସାମ୍ରାଜ୍ୟବାଦୀ ଏବଂ ବାଣିଜ୍ୟିକ

ମନୋଭାବ ସମଗ୍ର ବିଶ୍ୱକୁ ପ୍ରଭାବିତ କରିଛି । ଏମାନଙ୍କର ଗିଳି ପକାଇବାର ପ୍ରବଣତା ପାଇଁ ନିଜେ ନିଜେ ପରସ୍ପର ମଧ୍ୟରେ ଟଣାଟଣି ହୋଇଛନ୍ତି । ଫଳତଃ ଗୃହଯୁଦ୍ଧ, ମନାନ୍ତର, ମତାନ୍ତର ପ୍ରଭୃତି ମୁଣ୍ଡଟେକି ଠିଆ ହୋଇଛି । ପୃଥିବୀର ବିଭିନ୍ନ ଦେଶରେ ଏମାନେ ଉପନିବେଶ ସ୍ଥାପନ କରି ବାଣିଜ୍ୟ ବି କରିଛନ୍ତି ଏବଂ ଶାସକ ହୋଇ ଲାଟ୍ ବି ସାଜିଛନ୍ତି । ରେନେସାଁକାଳୀନ ସାହିତ୍ୟ-ସଭ୍ୟତା-ସଂସ୍କୃତିଦ୍ୱାରା ଏମାନେ ବିଶ୍ୱର ବିଭିନ୍ନ ଦେଶର ବାସିନ୍ଦାମାନଙ୍କୁ ଯୁକ୍ତିବାଦ, ମାନବବାଦ, ସ୍ଥାନୀୟ ଭାଷାର ଗୁରୁତ୍ୱ, ନେସନ ଷ୍ଟେଟ୍, ଜାତୀୟତାବାଦ ପ୍ରକୃତି ସମ୍ପର୍କରେ ସଚେତନ କରାଇଛନ୍ତି । ଏଇମାନଙ୍କର ଶୈକ୍ଷିକ ତାଲିମ୍ ଦ୍ୱାରା ବିଶ୍ୱର ବିଭିନ୍ନ ଦେଶର ପରାଧୀନ ମଣିଷ ଆଧୁନିକ ହୋଇ ନିଜ ନିଜର ବ୍ୟକ୍ତି ସ୍ୱାଧୀନତା ପାଇଁ ଲଢେଇ କରିଛନ୍ତି । ଏମାନେ ମଧ୍ୟଯୁଗୀୟ ସମାଜର ଭୂମିରୁ ବିଶ୍ୱବାସୀଙ୍କୁ ଉଦ୍‌ଧୃତ କରାଇ ଏକ ଯୁକ୍ତିଶୀଳ ଆଧୁନିକତାର ସ୍ୱାଦ ଚଖାଇ ପାରିଛନ୍ତି । ସବୁ କରିଛନ୍ତି, ତଥାପି ଏମାନେ ନିଜ ନିଜ ମଧ୍ୟରେ ଦୃଢ ନିର୍ବନ୍ଧ ସ୍ଥାପନ କରିପାରି ନାହାନ୍ତି।

ଇଉରୋପୀୟ ଜାତିସମୂହର ପାରସ୍ପରିକ ବୈଭିନ୍ନକୁ ମଧୁବାବୁ ଭାରତବର୍ଷର ପ୍ରାଦେଶିକ ଲୋକସମୂହ ମଧ୍ୟରେ ରହିଥିବା ଭିନ୍ନତାକୁ ଅତି ସନ୍ତର୍ପଣରେ ତୁଳି, ତନ୍ମଧ୍ୟସ୍ଥ ଜାତିଗତ ବିଦ୍ୱେଷତାକୁ ଉତ୍କଳୀୟମାନଙ୍କ ସମ୍ମୁଖରେ ଉନ୍ମୁକ୍ତ କରାଇ ସଚେତନତା ସୃଷ୍ଟି କରିଛନ୍ତି । ଉତ୍କଳ ଏବଂ ଉତ୍କଳୀୟ ଜାତିର ଉନ୍ନତି ପାଇଁ ଉତ୍କଳରେ ବସବାସ କରୁଥିବା ଅନ୍ୟ ଜାତିମାନଙ୍କର ଆନ୍ତରିକତାମୂଳକ ସଖ୍ୟ ମଧ୍ୟ ଆବଶ୍ୟକ । ଅପର ସହିତ ଆପଣାର ସମ୍ବନ୍ଧ ଭଲ ରୂପେ ପ୍ରତିଷ୍ଠିତ ନହେଲେ ବ୍ୟକ୍ତିସ୍ତରୀୟ ବା ଜାତିସ୍ତରୀୟ ଦୋଷ ଦୁର୍ବଳତା ଗୋଚରୀଭୂତ ହୋଇପାରେ ନାହିଁ । ମଧୁବାବୁ କହନ୍ତି- 'X ଖାଲି କଥାବାର୍ତ୍ତାରେ ନିଶ୍ଚିନ୍ତ ହୋଇ ରହିଲେ କିଛି ଫଳ ହେବ ନାହିଁ । ଯେତେବେଳେ ରାମଚନ୍ଦ୍ର ସେତୁବନ୍ଧ ବାନ୍ଧୁ ଥିଲେ ସେତେବେଳେ ସେହି ସେତୁ ବାନ୍ଧିବାରେ ବଡ ବଡ ବୀରମାନେ ତାଙ୍କର ବଳ ପରାକ୍ରମ ଖଟାଇ ଥିଲେ, ଗୁଣ୍ଡୁଚିମୂଷା ମଧ୍ୟ ତାହାର ବଳ ଓ ପରାକ୍ରମକୁ ଚାହିଁ ପାଣିରେ ବୁଡି ବାଲିରେ ଗଡି ସେ ବାଲିତକ ଆଣି ବନ୍ଧ ଉପରେ ଝାଡିଝୁଡି ଦେଉଥିଲା । ବଡ ବଡ ବଡ ବଡଙ୍କ କର୍ମ କର୍ମ କରନ୍ତୁ । ସାନ ସାନ, ସାନ ସାନଙ୍କ କର୍ମ କରନ୍ତୁ । ଦେଖିବ ଯେ ସମସ୍ତ ଉତ୍କଳ ଦିନକୁ ଦିନ ଉନ୍ନତି କରିବ । (୩)

ଉତ୍କଳୀୟ ଚାଷୀ ଏବଂ କାରିଗରମାନଙ୍କୁ ଉତ୍କଳ ଦେଶର ମୂଳଦୁଆ ବୋଲି ମଧୁବାବୁ ଜ୍ଞାନ କରୁଥିଲେ । ସେମାନଙ୍କୁ ଜାତିର ହାତଗୋଡ ଓ ପିଠି ବୋଲି ସେ ଭାବୁ ଥିଲେ । ସେଥିପାଇଁ କେଉଁ ଉପାୟରେ ଚାଷ କଲେ ବେଶୀ ଫସଲ ଫଳିବ, କେଉଁ ଚାଷ କଲେ ବେଶୀ ପଇସା ଆମଦାନି ହେବ, ତହିଁ ଉପରେ ସେ ଗୁରୁତ୍ୱ ଆରୋପ କରୁଥିଲେ । କାରିଗରମାନେ ବିଲାତି କାରିଗରଙ୍କ ସହିତ ସମତାଳ ହେବା ପାଇଁ କେଉଁ କେଉଁ ପଦକ୍ଷେପ ଗ୍ରହଣ କରିବେ, ସେଥିପାଇଁ ମଧୁବାବୁ ଆହ୍ୱାନ ଦେଉଥିଲେ । ଉତ୍କଳର ବ୍ୟବସାୟୀ ବାଣିଜ୍ୟଦ୍ୱାରା ବିଦେଶରୁ କିପରି ଅଧିକ ଅର୍ଥ ଆୟ କରିପାରିବ, ଭାଷା ସାହିତ୍ୟର କିପରି ସମୃଦ୍ଧି ସାଧନ ହୋଇପାରିବ ଏବଂ ଏସବୁ ସମ୍ପାଦିତ ହୋଇ,ସାରିବା ପରେ ସମାଜର ଅଗ୍ରଗତି ସମ୍ଭବ ବୋଲି ସେ ଅଭିଭାଷଣରେ ଆହ୍ୱାନ ଦେଉଥିଲେ ।

ସର୍ବଶିକ୍ଷା ଏବଂ ଇଂରାଜୀ ଶିକ୍ଷାର ମୌଳିକ ଲକ୍ଷ୍ୟ ପ୍ରତି ଦୃଷ୍ଟି ଦେବା ପାଇଁ ମଧୁବାବୁ ଓଡ଼ିଆମାନଙ୍କୁ ସଚେତନ କରାଇଛନ୍ତି । ଉଚ୍ଚ ଶିକ୍ଷିତ ଗୋଷ୍ଠୀଙ୍କର ଅନ୍ୟମାନଙ୍କ ସହିତ ମିଳାମିଶା ନକରିବାର ହୀନମନ୍ୟତାକୁ ସେ ପରିତ୍ୟାଗ କରିବା ପାଇଁ ନିର୍ଦ୍ଦେଶ ଦେଇଛନ୍ତି ।

ମଧୁବାବୁଙ୍କ ଧର୍ମୀୟ ଭାବନା ଏକ ଦେଶଦର୍ଶୀ ନଥିଲା । ଉତ୍କଳୀୟମାନଙ୍କ ମଧ୍ୟରେ ଯେଉଁ ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିଆନ, ବ୍ରାହ୍ମ ଇତ୍ୟାଦି ଭିନ୍ନ ଭିନ୍ନ ଧର୍ମର ଲୋକ ଏକତ୍ର ବାସବିହାର କରୁଥିଲେ, ସେମାନଙ୍କୁ ସେ ଗୋଟିଏ ଚେତନାର ବିଭିନ୍ନ ରୂପ ବୋଲି ବିଚାର କରୁଥିଲେ । ସର୍ବଧର୍ମର ମୂଳଭିତ୍ତି ସେହି ବ୍ରହ୍ମାଣ୍ଡ ଠାକୁର । ସେ କହୁଥିଲେ- ଯାହାଙ୍କ ନାମ କୀର୍ତ୍ତନରେ କେଉଁ ସମ୍ପ୍ରଦାୟର କିଛି ଆପତ୍ତି ହୋଇ ନପାରେ, ସେହି ମଙ୍ଗଳମୟଙ୍କ ନାମ ଧରି ଆମ୍ଭେମାନେ ସମ୍ମିଳନୀ କାର୍ଯ୍ୟ ଆରମ୍ଭ କରିଅଛୁଁ । କିନ୍ତୁ ଧର୍ମ ସମ୍ବନ୍ଧୀୟ ତର୍କ କରିବାକୁ ଗଲେ ଏକ ସମ୍ପ୍ରଦାୟଙ୍କ ଚକ୍ଷୁରେ ଯାହା ଯୁକ୍ତି ଓ ବିଶ୍ୱାସପୂର୍ଣ୍ଣ ବୋଲି ଜଣାଯିବ, ଅପର ସମ୍ପ୍ରଦାୟଙ୍କ ପକ୍ଷରେ ତାହା ଅଡୁଆ ଲାଗିବ । ଯଦିଚ ସମ୍ମିଳନୀ ମୂଳରେ ସବୁଧର୍ମର ପ୍ରବର୍ତ୍ତନ ସେଇ ଅନାଦି ଅନନ୍ତ ବିଦ୍ୟମାନ ତଥାପି ଧର୍ମବିଷୟକ ତର୍କ ଏ ସମ୍ମିଳନୀର ସୀମା ମଧ୍ୟକୁ ଆସି ନାହିଁ ।

ଉତ୍କଳ ସମ୍ମିଳନୀର ୨ୟ ଅଧିବେଶନର ପଞ୍ଚମ ପ୍ରସ୍ତାବର ଆଲୋଚନା ପ୍ରସଙ୍ଗରେ ମଧୁବାବୁ ଅତି କଠୋର ଅଥଚ ସ୍ପଷ୍ଟ ଭାଷାରେ ଓଡ଼ିଆମାନଙ୍କର ଦୋଷଦୁର୍ବଳତାକୁ ସମ୍ମୁଖୀକୃତ କରାଇଛନ୍ତି । ସେ ଉତ୍କଳୀୟମାନଙ୍କୁ ଭାରତୀୟ ସମସ୍ତ ଜାତିଙ୍କ ଅପେକ୍ଷା ଅଶିକ୍ଷିତ, ମୂର୍ଖ ଓ ଅସଭ୍ୟ ବୋଲି ଗଣନା କରିଛନ୍ତି । ଅନ୍ୟ ଜାତିର ଦୋଷାଦୋଷ ଆଲୋଚନା କରିବାର ଅଧିକାର ଉତ୍କଳୀୟମାନଙ୍କର ତଥା ଉତ୍କଳ ଜାତିର ନାହିଁ ବୋଲି ଦୃଢ କଣ୍ଠରେ

ଘୋଷଣା କରିଛନ୍ତି । ଆମମାନଙ୍କର ଜାତୀୟ ଜୀବନ ଅଛି କି ? ବୋଲି ପ୍ରଶ୍ନବାଣ ନିକ୍ଷେପ କରି ଉତ୍କଳୀୟମାନଙ୍କୁ ସତର୍କ କରାଇ ଦେଇଛନ୍ତି ।

ଅଧିକାଂଶ କ୍ଷେତ୍ରରେ ଆମ୍ଭମାନଙ୍କ ମଧ୍ୟରେ ଯେଉଁ ବ୍ୟକ୍ତିଗତ ଜୀବନ ବିଭେଦତା ଦ୍ୱାରା କବଳିତ ହୋଇ ବିଜାତୀୟ ମନ୍ତବ୍ୟ ପ୍ରଦାନ କରୁଛି, ତାହା କ୍ଷଣଭଙ୍ଗୁର । ସେହି ବ୍ୟକ୍ତିଗତ ଜୀବନର ଚେତନାରେ ପରିବର୍ତ୍ତନ ନଆସିଲେ ଜାତୀୟ ଜୀବନ ପ୍ରତିଷ୍ଠା ହୋଇପାରିବ ନାହିଁ । ଜଳର ଜାତୀୟ ଗୁଣ ହେଉଛି ନିମ୍ନଗତି । ଅର୍ଥାତ୍ ତଳକୁ ତଳକୁ ମାଡ଼ିଯିବା । ସେଥିପାଇଁ ଆକାଶରୁ ଖସି ପଡୁଥିବା ଅଜସ୍ର ଜଳକଣା ଏକତ୍ର ହୋଇ ନାଳ–ନଦୀ ଦେଇ ସମୁଦ୍ରରେ ମିଶିଯାଏ । ଏଠାରେ ସବୁ ସ୍ଥଳରେ ସବୁ ଅବସ୍ଥାରେ ଜଳ ନିଜର ଜାତୀୟ ଗୁଣକୁ ଧାରଣ କରି ନିଜର ଜାତୀୟ ଜୀବନର ଟେକ ରଖିଅଛି । ମଧୁବାବୁଙ୍କର ଉପରୋକ୍ତ ମନ୍ତବ୍ୟଟି ଯେତିକି ଯୁକ୍ତିନିଷ୍ଠ ସେତିକି ହୃଦ୍ୟ । ସର୍ବତ୍ର ଏବଂ ସର୍ବଦା ଜାତୀୟ ଜୀବନ ସମ୍ବନ୍ଧରେ ସଚେତନ ହୋଇ ଜୀବନ ନବଞ୍ଚିଲେ ଜାତୀୟ ଜୀବନ ଉନ୍ନତ ହୋଇପାରିବ ନାହିଁ ।

ମଧୁବାବୁ କହନ୍ତି 'ଯେବେ କେହି ଜଣେ ଓଡ଼ିଆ ଜାତିଙ୍କୁ ଗାଳିଦିଏ, ତାହାହେଲେ ତୁମ୍ଭ ମନରେ ରାଗ ହୁଏ କାହିଁକି ? ଏହାର କାରଣ ନିରୂପଣ କରିବାକୁ ଗଲେ ସ୍ପଷ୍ଟ ଜଣାଯିବ ଯେ ଏହା ଜାତୀୟ ଜୀବନର ଚିହ୍ନ । ତେଣୁ ମୋ କାର୍ଯ୍ୟ ଦ୍ୱାରା ମୋ ଜାତିର ନିନ୍ଦା ହେବ କି ନାହିଁ ? ଏ ପ୍ରଶ୍ନଟି ପ୍ରତ୍ୟେକ ବ୍ୟକ୍ତି ନିଜକୁ ନିଜେ ପଚାରିବା ଦରକାର । (୮) ଜାତୀୟ ଜୀବନ ସହିତ ଯିଏ ଲକ୍ଷ୍ୟ ରଖି ବ୍ୟକ୍ତିଗତ କାର୍ଯ୍ୟ ସମ୍ପାଦନା କରୁଛି, ସେ ହିଁ ଜାତୀୟ ଜୀବନର ଏକ ଅବିଚ୍ଛେଦ୍ୟ ଅଂଶ ସ୍ୱରୂପ ଗଣ୍ୟ ହେବ । ସେହି ବ୍ୟକ୍ତି ଯେଉଁ ଜାତି, ଯେଉଁ ଧର୍ମ, ଯେଉଁ ବର୍ଣ୍ଣର ହେଲେ ବି କିଛି ଯାଏ ଆସେ ନାହିଁ।

ଯେତେଦିନ ପର୍ଯ୍ୟନ୍ତ ବ୍ୟକ୍ତିଗତ ଜୀବନ ଜାତୀୟ ଜୀବନ ପାଇଁ ବଳିଦାନ କରୁନାହିଁ, ସେତେଦିନ ପର୍ଯ୍ୟନ୍ତ ଜାତୀୟ ଜୀବନ ଗଠିତ ହୋଇନାହିଁ ବୋଲି ଧରି ନିଆଯିବ । 'ମୋ କାର୍ଯ୍ୟ ଦ୍ୱାରା ମୋ ଜାତିର ମାନ ବଢୁଛି କି ନାହିଁ ? ପ୍ରଶ୍ନଟି ସଂପୃକ୍ତ ଜାତିର ପ୍ରତ୍ୟେକ ବ୍ୟକ୍ତି ନିଜକୁ ନିଜେ ପଚାରିବା ଉଚିତ୍ ।

ଉତ୍କଳ ଜନନୀ ଓ ଭାରତ ଜନନୀଙ୍କ ମଧ୍ୟରେ ମଧୁବାବୁ କୌଣସି ପ୍ରଭେଦ ଦେଖୁ ନଥିଲେ । ଉତ୍କଳର ଉନ୍ନତି ହିଁ ଭାରତର ଉନ୍ନତି ବୋଲି ସେ ବିଚାରୁ ଥିଲେ । ଉତ୍କଳର ବାସ କରୁଥିବା ଅଣଓଡିଆମାନଙ୍କ ସହିତ ସୌହାର୍ଦ୍ଦ୍ୟ ଓ ଭ୍ରାତୃଭାବ ସଂସ୍ଥାପନା କରିବା ପାଇଁ ସେ ନିର୍ଦ୍ଦେଶ ଦେଇଛନ୍ତି । 'ଏକତ୍ର ହେବାକୁ ଶିଖ, ଜୀବନର ସୀମା ବୃଦ୍ଧି କରିବାକୁ ଶିଖ । ବୀଜ ଯେପରି ନୀଚକୁ ଯାଇ ବୃକ୍ଷକୁ ଉଚ୍ଚକୁ ଉଠାଏ, ସେହିପରି ନିଜେ ନୀଚକୁ ଯାଅ ଓ ଜାତିକୁ ଉଚ୍ଚକୁ ଉଠାଅ ବୋଲି' ସେ ଆହ୍ୱାନ କରିଛନ୍ତି । ଏଠାରେ ନୀଚକୁ ଯିବାର ଅର୍ଥ ନମନୀୟ ମାନସିକତାର ଅଧିକାରୀ ହେବା ।

କବିତା ହେଉକି ବକ୍ତୃତା– ସବୁଠି ଉତ୍କଳ ଜନନୀର ଜରାକ୍ଲିଷ୍ଟ, ଜୀର୍ଣ୍ଣ, ମୁମୂର୍ଷୁ ଅବସ୍ଥା ଅବଲୋକନ କରି ସଚେତନ ହେବା ପାଇଁ ପ୍ରତ୍ୟେକ ଉତ୍କଳୀୟମାନଙ୍କୁ ମଧୁବାବୁ ପ୍ରେରଣା ଦେଇଛନ୍ତି । ଉତ୍କଳ ସମ୍ମିଳନୀର ସ୍ୱେଚ୍ଛାସେବୀମାନଙ୍କୁ ସେ 'ଉତ୍କଳର ଭାବୀ ଆଶା' ବୋଲି ସମ୍ବୋଧନ କରିଛନ୍ତି । ଉତ୍କଳୀୟମାନଙ୍କର ବ୍ୟକ୍ତିଗତ ଜୀବନ ଏବଂ ଜାତୀୟ ଜୀବନ ମଧ୍ୟରୁ ଜାତୀୟ ଜୀବନଟି ଅତ୍ୟନ୍ତ ଶିଥିଳ । ସେହି ଜାତୀୟ ଜୀବନକୁ ଉତେଜିତ କରି ତାହାକୁ ବ୍ୟକ୍ତିଗତ ଜୀବନ ଭଳି ବଳବାନ କରାଇଲେ ଉତ୍କଳ ସମ୍ମିଳନୀର ଉଦ୍ଦେଶ୍ୟ ପୂରଣ ହେବ ବୋଲି ସେ ବାରମ୍ବାର ଘୋଷଣା କରିଛନ୍ତି ।

'ଉତ୍କଳ ସମ୍ମିଳନୀର ଅର୍ଥ କ'ଣ ?' ନିରୂପଣ କରିବାକୁ ଯାଇ ମଧୁବାବୁ ସଦୃଷ୍ଟାନ୍ତ ଯୁକ୍ତିଟିଏ ଉପସ୍ଥାପନ କରିଛନ୍ତି, ଯାହାକୁ ମୁଁ ଏଠାରେ ଅବିକଳ ଉଦ୍ଧାର କରିବାକୁ ଚାହୁଁଛି । ସେ କହନ୍ତି– 'ପୃଥିବୀରେ ନାନା ପ୍ରକାର ମିଳନ ହୁଏ– ଜଡପଦାର୍ଥର ମିଳନ, ପଶୁପକ୍ଷୀମାନଙ୍କର ମିଳନ, ବୃକ୍ଷମାନଙ୍କର ମିଳନ ଓ ମନୁଷ୍ୟମାନଙ୍କର ମିଳନ । ବଢାଇ ଦୁଇଖଣ୍ଡ କାଷ୍ଠ ଏକତ୍ରିତ କରି ଦୁଇଟି ଜଡ ପଦାର୍ଥର ମିଳନ କରାଏ । ଏକ ଗୋଷ୍ଠରେ ପଶୁମାନେ ଏକତ୍ରିତ ହେଲେ ସେମାନଙ୍କର ମିଳନ ହୁଏ । ବରଗଛ ତା ପାଖ ଗଛକୁ କ୍ରୋଡସ୍ଥ କରିନିଏ ଏବଂ ଗୋଲାପ ଗଛର ମିଳନରେ ନାନା ବର୍ଣ୍ଣର ଫୁଲ ଫୁଟିଥାଏ । କିନ୍ତୁ ମିଳନ ଓ ସମ୍ମିଳନ ଏକ କଥା ନୁହେଁ । ରାସାୟନିକ କମ୍ପାଉଣ୍ଡର ଗୁଣ ଏଲିମେଣ୍ଟଠାରୁ ସମ୍ପୂର୍ଣ୍ଣ ରୂପେ ପୃଥକ, ବ୍ୟକ୍ତିଗତ ଜୀବନ ଜାତୀୟ ଜୀବନରେ ନମିଳିବା ଯାଏ ସମ୍ମିଳନ ହୁଏ ନାହିଁ । ଯେଉଁମାନେ ଜାତିର ଉନ୍ନତି ଇଚ୍ଛା କରନ୍ତି ସେମାନେ ପ୍ରଥମେ ଆପଣାକୁ ପରୀକ୍ଷା କରି ଦେଖିବା ଉଚିତ ଯେ ହୃଦୟରେ ସେମାନଙ୍କର ଜାତୀୟଭାବ ପୂର୍ଣ୍ଣଭାବରେ ଅଛି କି ନାହିଁ ? ଏହି ପରୀକ୍ଷା ବଡ କଠିନ କାର୍ଯ୍ୟ । ଜାତୀୟ ଜୀବନର ସମ୍ପର୍କ ଆତ୍ମାସଙ୍ଗରେ ଏବଂ ବ୍ୟକ୍ତିଗତ ଜୀବନର ସମ୍ପର୍କ ପ୍ରାଣସଙ୍ଗରେ ।' ଇଂରେଜମାନଙ୍କ ଜାତୀୟ ଜୀବନ ଅତ୍ୟନ୍ତ ଉଚ୍ଚ ହୋଇଥିବାରୁ ସେମାନେ ସ୍ୱଜୀବନ ଏବଂ ସ୍ୱସମ୍ମାନ ଅପେକ୍ଷା ଜାତୀୟ ଜୀବନ ଓ ଜାତୀୟ ସମ୍ମାନକୁ ସର୍ବାଗ୍ରେ ଗୁରୁତ୍ୱ ଦେଇଥାନ୍ତି । ପ୍ରତ୍ୟେକ ଉତ୍କଳୀୟ ଶେଷ ରକ୍ତବିନ୍ଦୁ ଥିବାଯାଏ ଜାତୀୟ ଜୀବନ ପାଇଁ ଆତ୍ମବଳି ଦେବାକୁ ଆଗେଇ ଆସିବା ଦରକାର ।

ଉତ୍କଳରେ ଶିଳ୍ପୋନ୍ନତିର ଅଭାବକୁ ଉତ୍କଳର ଆର୍ଥିକ ସ୍ୱଚ୍ଛଳତାର ପ୍ରଧାନ ଅନ୍ତରାୟ ବୋଲି ମଧୁବାବୁ କହୁଥିଲେ । ଜର୍ମାନ, ଇଂଲଣ୍ଡ, ଫ୍ରାନ୍ସ ପ୍ରଭୃତି ଇଉରୋପୀୟ ଦେଶ ସମୂହରେ ଧନଶକ୍ତି, ଜନଶକ୍ତି ଓ ମନଶକ୍ତି ଅର୍ଥାତ୍ ଅର୍ଥ, କାୟିକ ପରିଶ୍ରମ ଏବଂ ବୁଦ୍ଧିକୁ ଶିଳ୍ପ ପାଇଁ ଯେପରି ବିନିଯୋଗ କରାଯାଉଛି, ଉତ୍କଳରେ ସେହିପରି ହେବା ଉଚିତ୍ । ସାଧାରଣ ମଣିଷର ଚକ୍ଷୁ, ହସ୍ତ, ପଦ, କାନ, ମସ୍ତିଷ୍କ ଅପେକ୍ଷା ଶିକ୍ଷିତ ମଣିଷର ଚକ୍ଷୁ, ହସ୍ତ, ପଦାଦି ଅଧିକ କାର୍ଯ୍ୟ କରେ । ତେଣୁ ଶିକ୍ଷାର ଯଥୋଚିତ ପ୍ରସାର ଆବଶ୍ୟକ ।

ସ୍ତ୍ରୀ ଜାତି ଏବଂ ସ୍ତ୍ରୀ ଶିକ୍ଷା ପ୍ରତି ମଧୁବାବୁଙ୍କର ଦୃଷ୍ଟିକୋଣ ବେଶ୍ ସମକାଳୀନ ମନେ ହୁଏ । ବାଳିକା, ଯୁବତୀ, ବୃଦ୍ଧା-ସଭିଏଁ ମାନବ ଜାତିର ମାତା । କିନ୍ତୁ ଏମାନଙ୍କର ଶିକ୍ଷା ସମ୍ବନ୍ଧରେ ଉତ୍କଳରେ ଯତ୍ନ, ଉଦ୍‌ଯୋଗ ଓ ଉତ୍ସାହର ଅଭାବ ରହିବା ଅନୁଚିତ । ପୁରାଣ ଲକ୍ଷ୍ମୀ (ଧନଶକ୍ତିର ଅଧିକାରିଣୀ), ସରସ୍ୱତୀ (ବିଦ୍ୟାଶକ୍ତିର ଅଧିକାରିଣୀ)ଙ୍କ ପାଇଁ ସମଗ୍ର ଦେବଜାତି ଦୁର୍ଗତିମୁକ୍ତ ହୁଅନ୍ତି । ଆର୍ଥିକ ସୁଖସ୍ୱାଚ୍ଛନ୍ଦ୍ୟ ଏବଂ ମାନସିକ ସ୍ଥିରତା ତଥା ପ୍ରଶାନ୍ତି ଏଇ ଦୁଇ ମାତୃଶକ୍ତି ଦ୍ୱାରା ଅବ୍ୟାହତ ରହେ । ଅପର ପକ୍ଷରେ ଇଂଲଣ୍ଡର ମହାରାଣୀ ଏଲିଜାବେଥ ଏବଂ ମହାରାଣୀ ଭିକ୍ଟୋରିଆ ଜଣେ ଜଣେ ନାରୀ ହୋଇଥିଲେ ମଧ୍ୟ ସେମାନଙ୍କ ଦ୍ୱାରା ଦେଶକାଳପାତ୍ରର ସମୃଦ୍ଧି ସାଧିତ ହୋଇ ପାରିଛି । ସେଥିପାଇଁ ନାରୀ ଶିକ୍ଷାର ପ୍ରସାର ଏକାନ୍ତ ଆବଶ୍ୟକ । 'ନଦୀସ୍ରୋତ ଯେଉଁ ପ୍ରକାର ନଦୀର ଉତ୍ପତ୍ତି ସ୍ଥାନରୁ ଅଧିକ ଉଚ୍ଚ ସ୍ଥାନକୁ ଉଠି ନପାରେ, ସେହି ପ୍ରକାର କୌଣସି ଜାତି ସେ ଜାତିର ମାତାମାନଙ୍କୁ ଅର୍ଥାତ୍ ନାରୀ ଜାତିକୁ ନୀଚ ଅବସ୍ଥାରେ ରଖି ଆପେ ଉନ୍ନତ ଅବସ୍ଥାକୁ ଉଠି ନପାରେ ।' ଉତ୍କଳରେ ସ୍ତ୍ରୀ ଶିକ୍ଷାରେ ଉନ୍ନତି ସାଧିତ ହେଲେ ଉତ୍କଳ- ଜାତୀୟ ଜୀବନ ସମୃଦ୍ଧ ହେବ । ଜନନୀ ଏବଂ ଜନ୍ମଭୂମି ଉଭୟଙ୍କୁ ପ୍ରତ୍ୟେକେ ନିଜ ନିଜ ଆତ୍ମାରେ ଧାରଣ କରି ସମସ୍ତ କର୍ମ ସମ୍ପାଦନ କରନ୍ତୁ ବୋଲି ସେ ପରାମର୍ଶ ଦେଉଥିଲେ ।

ଏକ ଉତ୍ତୀର୍ଣ୍ଣ- ଉତ୍କଳୀୟତାର ପ୍ରାଣ ପ୍ରତିଷ୍ଠା ପାଇଁ ମଧୁସୂଦନ ଦାସଙ୍କ ସମଗ୍ର ଜୀବନ ସମର୍ପିତ ହୋଇଛି । ଶିକ୍ଷା, ଶିଳ୍ପ, ସଂସ୍କୃତି, କୃଷି, ବ୍ୟବସାୟ, ଜାତୀୟତା, ଆର୍ଥିକ ସ୍ୱଚ୍ଛଳତା ପ୍ରଭୃତିରେ କିପରି ଉତ୍କଳ ଏବଂ ଉତ୍କଳୀୟମାନେ ସର୍ବାନ୍ତକରଣରେ ସ୍ୱୟଂସିଦ୍ଧିତା ହାସଲ କରିବେ, ସେ ଦିଗରେ ସେ ଯଥାସାଧ୍ୟ ମାର୍ଗ ନିର୍ଦ୍ଦେଶ କରି ଯାଇଛନ୍ତି । ଏକ ପୂର୍ଣ୍ଣାଙ୍ଗ ସ୍ୱଚ୍ଛଳ ଉତ୍କଳର ନବ ନିର୍ମାଣ ତାଙ୍କ ସମଗ୍ର ଜୀବନର ନିଷ୍କର୍ଷ ଥିଲା । 'ମୁଁ ଜନନୀ ଉତ୍କଳର ସନ୍ତାନ । ମୋହର ଲକ୍ଷ ଲକ୍ଷ ଭାଇଭଉଣୀ ଅଛନ୍ତି । ସେମାନଙ୍କର ଜୀବନରେ ମୋହର ଜୀବନ ମିଶିଯାଇ ଲୀନ ହୋଇଯାଉ । ଏକ ଜୀବନ ହୋଇ ଜାତୀୟ ଜୀବନ ରୂପେ ପ୍ରବଳ ବେଗରେ ପ୍ରବାହିତ ହେଉ ।' ଏହା ହିଁ ଥିଲା ମଧୁବାବୁଙ୍କର ସମଗ୍ର ଜୀବନର ସ୍ୱପ୍ନ । ଉତ୍କଳ ସମ୍ମିଳନୀ (୧୯୦୩)କୁ ଶହେ ଦଶବର୍ଷ, ସ୍ୱତନ୍ତ୍ର ଉତ୍କଳ ପ୍ରଦେଶକୁ ସତସ୍ତରୀ ବର୍ଷ ଏବଂ ଭାରତର ସ୍ୱାଧୀନତା ପ୍ରାପ୍ତିକୁ ପଞ୍ଚଷଠୀ ବର୍ଷରୁ ଉର୍ଦ୍ଧ୍ୱ ହେଲାଣି, ତଥାପି ମଧୁବାବୁଙ୍କର ସେଇ ସ୍ୱପ୍ନ ସାକାର ହୋଇପାରି ନାହିଁ । ବୋଧହୁଏ ଯେଉଁଦିନ 'ତୁମେ' ଏବଂ 'ମୁଁ' ପରସ୍ପରର ଆତ୍ମା ବିଷୟରେ ସଚେତନ ହୋଇ ସମସ୍ତ କ୍ଷେତ୍ରରେ ଦେଖାଯାଉଥିବା ଏବଂ ଦେଖାଯାଉ ନଥିବା ଖାଲଢିପଗୁଡ଼ିକୁ ସମତୁଲ କରିବା ସଙ୍ଗେ ସଙ୍ଗେ ହାତ ଧରା ଧରି ହୋଇ ଛାତିରେ ଛାତି ମିଶାଇ ଗାଁ ବାଟ, ଦେଶବାଟ, ଜାତିବାଟକୁ ସମତୁଲ-ସୁନ୍ଦର ଏବଂ ସଙ୍ଗତିଯୁକ୍ତ କରି ପାରୁଥିବା ସେଇଦିନ ମଧୁବାବୁଙ୍କର ମାତା ମାତା ଡାକି ଡାକି, ଭାଇ ଭାଇ ଖୋଜି ଖୋଜି ଥକି ପଡିଥିବା ହାଡୁଆ ମୁହଁରେ ହସ ଫୁଟିବ, ଏହା ନିଃସନ୍ଦେହ ।

ଓଡ଼ିଆ ବିଭାଗ, ବିଶ୍ୱଭାରତୀ,
ଶାନ୍ତିନିକେତନ (ପଶ୍ଚିମବଙ୍ଗ)

**ପାଦଟୀକା**

୧) ଉତ୍କଳଗୌରବ ମଧୁସୂଦନଙ୍କ ଓଡ଼ିଆ ରଚନାବଳୀ-ସମ୍ପାଦନା- ଦେବେନ୍ଦ୍ର କୁମାର ଦାଶ ଏବଂ ଉକ୍ଟର ନଗେନ ଦାସ ପ୍ରଗତି ଉତ୍କଳ ସଂଘ- ରାଉରକେଲା, ୨୦୧୦, ପୃଷ୍ଠା-୭୯ ।

୨) Oxford Advance Learner's Dictionary-2010, Page- 847.

୩) ଉତ୍କଳଗୌରବ ମଧୁସୂଦନଙ୍କ ଓଡ଼ିଆ ରଚନାବଳୀ- ପୃ-୬୬ ।

୪) ସେହିପୁସ୍ତକ- ପୃ-୬୯ ।

୫) ସେହିପୁସ୍ତକ- ପୃ- ୮୧ ।

୬) ସମସ୍ତ ଉଦ୍ଧୃତି- ସେହିପୁସ୍ତକ ।



# ତୃଣମୂଳ ଗଣତନ୍ତ୍ର ଓ ଗ୍ରାମସଭା

ଡକ୍ଟର ପୁରୁଷୋତ୍ତମ ବିଶ୍ୱାଳ

ଏକବିଂଶ ଶତାବ୍ଦୀରେ ପଞ୍ଚାୟତିରାଜ ବ୍ୟବସ୍ଥାରେ ଗ୍ରାମ ସଭାର ଭୂମିକା ଓ ଦାୟିତ୍ୱ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ମହାମାନବ ମହାତ୍ମା ଗାନ୍ଧୀ ତାଙ୍କ ମହାପ୍ରୟାଣର ପ୍ରାୟ ଏକମାସ ପୂର୍ବରୁ 'ହରିଜନ' ପତ୍ରିକାରେ ପଞ୍ଚାୟତିରାଜର ଗୁରୁତ୍ୱପୂର୍ଣ୍ଣ ଭୂମିକା ସଂପର୍କରେ ନିଜର ମତବ୍ୟକ୍ତ କରିଥିଲେ । ଗାନ୍ଧିଜୀ ଲେଖିଥିଲେ- 'The greater the power of the panchayats, the better for the people'.(ହରିଜନ, ୨୧.୧୨.୧୯୪୭) ଅର୍ଥାତ ପଞ୍ଚାୟତକୁ ଯେତେ ବେଶୀ କ୍ଷମତା ଦିଆଯିବ, ଜନସାଧାରଣଙ୍କ ପାଇଁ ସେତେ ମଙ୍ଗଳ । ଗ୍ରାମାଞ୍ଚଳର ସାଧାରଣ ଜନତାଙ୍କ ସ୍ୱଶାସନରେ ସହଭାଗିତା ନିମନ୍ତେ ଗ୍ରାମସଭା ହେଉଛି ପଞ୍ଚାୟତିରାଜ ବ୍ୟବସ୍ଥାରେ ଏକ ଆନୁଷ୍ଠାନିକ ଆଭିମୁଖ୍ୟ । ଗ୍ରାମ୍ୟ ଭାରତରେ ସକ୍ରିୟ ଭାବେ କାର୍ଯ୍ୟରତ ଥିବା ତୃଣମୂଳ ଗଣତନ୍ତ୍ରର ଏହା ହେଉଛି ପ୍ରଥମ ସୋପାନ । ସାଧାରଣ ଜନତାଙ୍କ ସଶକ୍ତିକରଣ ନିମନ୍ତେ ଗ୍ରାମସଭା ହେଉଛି ଏକ ବଳିଷ୍ଠ ମାଧମ ।

ଆମ ଦେଶର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ ରାଜସ୍ଥାନ ରାଜ୍ୟର ନଗୌର ଜିଲ୍ଲାଠାରେ ୧୯୫୯ ମସିହା ଅକ୍ଟୋବର ମାସ ୨ ତାରିଖ ପବିତ୍ର ଗାନ୍ଧୀ ଜୟନ୍ତୀ ଦିନ ପଞ୍ଚାୟତିରାଜ ଅନୁଷ୍ଠାନର ଶୁଭ ଉଦ୍‌ଘାଟନ କରିଥିଲେ । ଇତିମଧ୍ୟରେ ଆମ ଦେଶରେ ପଞ୍ଚାୟତିରାଜ ବ୍ୟବସ୍ଥାର ସୁବର୍ଣ୍ଣ ଜୟନ୍ତୀ ସଂପୂର୍ଣ୍ଣ ହୋଇ ସାରିଛି । ସେଥିପାଇଁ ୨୦୦୯ ମସିହା ଅକ୍ଟୋବର ୨ ତାରିଖରୁ ୨୦୧୦ ମସିହା ଅକ୍ଟୋବର ମାସ ୨ତାରିଖ ପର୍ଯ୍ୟନ୍ତ ବର୍ଷକୁ ଭାରତରେ ଗ୍ରାମସଭା ବର୍ଷଭାବେ ପାଳନ କରାଯାଇଥିଲା । ସମଗ୍ର ଦେଶରେ ଗ୍ରାମସଭା ବର୍ଷକୁ ଘଟଣାବହୁଳ ଓ ସମ୍ଭାବନାମୟ ବର୍ଷ ଭାବେ ପାଳନ କରିବା ପାଇଁ କେନ୍ଦ୍ର ସରକାରଙ୍କ ପଞ୍ଚାୟତିରାଜ ମନ୍ତ୍ରଣାଳୟ ପକ୍ଷରୁ ସ୍ୱତନ୍ତ୍ରଭାବେ ନିର୍ଦ୍ଦେଶନାମା ଜାରି କରାଯାଇଥିଲା ।

ଗ୍ରାମସଭା ହେଉଛି ଗ୍ରାମପଞ୍ଚାୟତର ପ୍ରାଣକେନ୍ଦ୍ର । ତ୍ରିସ୍ତରୀୟ ପଞ୍ଚାୟତିରାଜ ବ୍ୟବସ୍ଥା ପ୍ରଚଳନ ହେବା ପୂର୍ବରୁ ଭାରତର ବିଭିନ୍ନ ପ୍ରାନ୍ତରେ ଗ୍ରାମସଭାର ପ୍ରଚଳନ ଥିଲା । ଗଣତାନ୍ତ୍ରିକ ବ୍ୟବସ୍ଥାରେ ଗ୍ରାମାଞ୍ଚଳର ସାଧାରଣ ଲୋକଙ୍କୁ ସାମିଲ କରିବା ନିମନ୍ତେ ଏହି ସଭା ଥିଲା ଏକ ଫଳପ୍ରଦ ସାଧନ । ୧୯୫୯ ମସିହାରୁ ୧୯୬୨ ମସିହା ମଧ୍ୟରେ ଯେତେବେଳେ ବିଭିନ୍ନ ରାଜ୍ୟରେ ପଞ୍ଚାୟତିରାଜ ବ୍ୟବସ୍ଥାର ସୂତ୍ରପାତ ହେଲା, ସେତେବେଳେ ଅନେକ ରାଜ୍ୟର ଆଇନରେ ଗ୍ରାମସଭାର ଉଲ୍ଲେଖ ନ ଥିଲା । ଏହିଭଳି ଅଭାବ ଦୃଷ୍ଟିଗୋଚର ହେବା ପରେ ୧୯୬୨ ମସିହା ଜୁନ ମାସ ୨୬ ତାରିଖ ଦିନ ତତ୍‌କାଳୀନ କେନ୍ଦ୍ର ସରକାରଙ୍କ ଗୋଷ୍ଠୀ ଉନ୍ନୟନ ଓ ସହଯୋଗ ମନ୍ତ୍ରଣାଳୟ ପକ୍ଷରୁ ଏକ ସଂକଳ୍ପ ଜରିଆରେ ଗ୍ରାମସଭା ଗଠନ ନିମନ୍ତେ ବ୍ୟବସ୍ଥା କରାଗଲା । ତା'ପରେ କେନ୍ଦ୍ର ସରକାର ଆର.ଆର ଦିବାକରଙ୍କ ଅଧ୍ୟକ୍ଷତାରେ ପଞ୍ଚାୟତିରାଜ ବ୍ୟବସ୍ଥାରେ ଗ୍ରାମସଭାର ସ୍ଥିତି ସଂପର୍କରେ ଅନୁଧ୍ୟାନ କରିବା ପାଇଁ ଏକ ଅନୁଧ୍ୟାନକାରୀ ଦଳ ଗଠନ କରିଥିଲେ । ଏହି ଦଳ ତାଙ୍କ ରିପୋର୍ଟ ୧୯୬୩ ମସିହା ମାର୍ଚ୍ଚ ମାସ ୩୦ ତାରିଖ ଦିନ ପ୍ରଦାନ କରିଥିଲେ । ବିଭିନ୍ନ ରାଜ୍ୟରେ ଗ୍ରାମସଭାର କାର୍ଯ୍ୟକାରିତା ସମ୍ପନ୍ଧରେ ଅଧ୍ୟୟନ କରିବା ପରେ ଅନୁଧ୍ୟାନକାରୀ ଦଳ ମତ ଦେଇଥିଲେ ଯେ ଗ୍ରାମ୍ୟସ୍ତରୀୟ ଗଣତନ୍ତ୍ରକୁ ସାମାଜିକ ଆଧାର ଉପରେ ପ୍ରତିଷ୍ଠିତ କରିବା ପାଇଁ ଗ୍ରାମସଭା ଏକ ଅନୁକୂଳ ବାତାବରଣ ସୃଷ୍ଟି କରିପାରିବ ।

ଭାରତୀୟ ସମ୍ବିଧାନର ଐତିହାସିକ ୭୩ତମ ସଂଶୋଧନ ଫଳରେ ପଞ୍ଚାୟତିରାଜ ବ୍ୟବସ୍ଥାରେ ଅନ୍ତର୍ଭୁକ୍ତ ହୋଇଥିବା ଗ୍ରାମସଭାକୁ ସାମ୍ବିଧାନିକ ମର୍ଯ୍ୟାଦା ପ୍ରଦାନ

କରାଯାଇଛି । ସମ୍ବିଧାନର ଅନୁଚ୍ଛେଦ ୨୪୩ (ଏ)ରେ ବର୍ଣ୍ଣନା କରାଯାଇଛି- 'A gram sabha may exercise such powers and perform such functions at the village level as the legislature of a state may by law provide.' ଅର୍ଥାତ୍ ଗ୍ରାମ ସଭା ଗ୍ରାମ ସ୍ତରରେ ଏଭଳି କ୍ଷମତା ପ୍ରୟୋଗ କରିବେ ଓ ଏଭଳି କାର୍ଯ୍ୟ ସଂପାଦନ କରିବେ, ଯାହା ରାଜ୍ୟ ବିଧାନସଭା ଆଇନ ପ୍ରଣୟନ ଦ୍ୱାରା ବ୍ୟବସ୍ଥା କରିବେ । ଉକ୍ତ ଅନୁଚ୍ଛେଦରୁ ସ୍ପଷ୍ଟ ଜଣାଯାଇଛି ଯେ ସମ୍ବିଧାନରେ ଗ୍ରାମସଭାର କେବଳ ମାତ୍ର ବ୍ୟବସ୍ଥା କରାଯାଇଛି । ଗ୍ରାମସଭାର ନିର୍ଦ୍ଦିଷ୍ଟ କ୍ଷମତା, କାର୍ଯ୍ୟ ଓ ଦାୟିତ୍ୱ ବିଷୟରେ ସମ୍ବିଧାନରେ ବିଶେଷ ବର୍ଣ୍ଣନା କରାଯାଇନାହିଁ । ଗ୍ରାମସଭାର କ୍ଷମତା ଓ ଦାୟିତ୍ୱ ସଂପୂର୍ଣ୍ଣଭାବେ ରାଜ୍ୟ ସରକାରଙ୍କ ହାତରେ ଛାଡ଼ି ଦିଆଯାଇଛି । ବହୁ ଚର୍ଚ୍ଚିତ ସମ୍ବିଧାନ ସଂଶୋଧନ ପରେ ଗ୍ରାମସଭା ସାମ୍ବିଧାନିକ ମର୍ଯ୍ୟାଦା ପାଇଛି ।

ଗ୍ରାମପଞ୍ଚାୟତ ମଧ୍ୟରେ ଥିବା ଗ୍ରାମମାନଙ୍କର ସଭାକୁ ଗ୍ରାମସଭା କୁହାଯାଇଥାଏ । ସବୁଗ୍ରାମର ଭୋଟର ତାଲିକାରେ ନାମ ରହିଥିବା ପୁରୁଷ ଓ ମହିଳାମାନେ ଗ୍ରାମସଭାର ସଭ୍ୟ ଅଟନ୍ତି । ଓଡ଼ିଶା ସମେତ ଉତ୍ତର ପ୍ରଦେଶ, ପଶ୍ଚିମବଙ୍ଗ, ମହାରାଷ୍ଟ୍ର, ଗୁଜୁରାଟ, ମଧ୍ୟପ୍ରଦେଶ, ଆନ୍ଧ୍ରପ୍ରଦେଶ, ପଞ୍ଜାବ ପ୍ରଭୃତି ରାଜ୍ୟରେ ଏହିଭଳି ବ୍ୟବସ୍ଥା ରହିଛି ।

ଗ୍ରାମସଭା ବିଭିନ୍ନ ଗ୍ରାମରେ ସରପଞ୍ଚଙ୍କ ଦ୍ୱାରା ନିର୍ଦ୍ଧାରିତ ଏକ ସୁବିଧାଜନକ ସ୍ଥାନରେ ଅନୁଷ୍ଠିତ ହୁଏ । ଓଡ଼ିଶା ଗ୍ରାମପଞ୍ଚାୟତ ଅଧିନିୟମ- ୧୯୬୪ର ଧାରା ୫(୧)ରେ ସ୍ପଷ୍ଟ ଭାବେ କୁହାଯାଇଛି ଯେ ଗ୍ରାମସଭା ବର୍ଷକୁ ଦୁଇଥର ନିଶ୍ଚିତଭାବେ ବସିବ । ରାଜ୍ୟସରକାରଙ୍କ ପରବର୍ତ୍ତୀ ନିର୍ଦ୍ଦେଶ ଅନୁଯାୟୀ ଗ୍ରାମପଞ୍ଚାୟତମାନେ ଆବଶ୍ୟକ ହେଲେ ଅଧିକ ସଂଖ୍ୟକ ଗ୍ରାମସଭା ଡାକି ପାରିବେ । ନିୟମ ଅନୁସାରେ ଗ୍ରାମସଭାର ବୈଠକ ଫେବୃଆରୀ ଓ ଜୁନ ମାସରେ ବସିଥାଏ । ଏହା ବ୍ୟତୀତ ଗ୍ରାମସଭାର ଅତିରିକ୍ତ ବୈଠକ ପ୍ରତିବର୍ଷ ଜାନୁୟାରୀ ୨୬ ତାରିଖ, ମଇ ପହିଲା, ଅଗଷ୍ଟ ୧୫ ତାରିଖ ଓ ଅକ୍ଟୋବର ମାସ ୨ ତାରିଖରେ ବସି ପାରିବ । ଏହା ବାଦ ଦରକାର ପଡ଼ିଲେ ଅଧିକ ଥର ମଧ୍ୟ ବୈଠକ ଡ଼କାଯାଇ ପାରେ ।

ଅଧିକାଂଶ ରାଜ୍ୟରେ ବର୍ଷରେ ଦୁଇଥର ଗ୍ରାମସଭା ଅନୁଷ୍ଠିତ ହୁଏ । ବିହାର, ରାଜସ୍ଥାନ, ଆସାମ, ହିମାଚଳ ପ୍ରଦେଶ ଭଳି ରାଜ୍ୟରେ ବର୍ଷରେ ଚାରିଥର ଗ୍ରାମସଭା ଅନୁଷ୍ଠିତ ହୋଇଥାଏ । ତ୍ରିପୁରାରେ ବର୍ଷକୁ ଥରେ ମାତ୍ର ଗ୍ରାମସଭା ଅନୁଷ୍ଠିତ ହୁଏ । କେରଳ ଓ ମଧ୍ୟପ୍ରଦେଶରେ ପ୍ରତିମାସରେ ଗ୍ରାମସଭା ବୈଠକ ବସିବ ବୋଲି ନିୟମ ପ୍ରଣୟନ କରାଯାଇଛି ।

ଗ୍ରାମସଭାରେ କୋରମ ନିମନ୍ତେ ଏକଦଶମାଂଶ ସଭ୍ୟ ବୈଠକରେ ଉପସ୍ଥିତ ରହିବା ଆବଶ୍ୟକ । ସେଥିରୁ ଏକ ତୃତୀୟାଂଶ ସଭ୍ୟ ମହିଳା ହୋଇଥିବା ଦରକାର । ଆନ୍ଧ୍ରପ୍ରଦେଶ, ଗୁଜୁରାଟ, କର୍ଣ୍ଣାଟକ ଓ ତାମିଲନାଡୁ ପ୍ରଭୃତି ରାଜ୍ୟର ଆଇନ ଅନୁସାରେ ଗ୍ରାମ ସଭାରେ କୌଣସି କୋରମର ଆବଶ୍ୟକତା ନାହିଁ, କୋରମ ପାଇଁ ହରିୟାଣା ରାଜ୍ୟରେ ଏକଦଶମାଂଶ ଓ ପଞ୍ଜାବରେ ଏକ ପଞ୍ଚମାଂଶ ସଭ୍ୟମାନଙ୍କର ଉପସ୍ଥିତ ଦରକାର । କେରଳ ରାଜ୍ୟର ନିୟମ ଅନୁସାରେ ଏକ ତୃତୀୟାଂଶ ବା ସର୍ବନିମ୍ନ ୫୦ଜଣ ସଭ୍ୟ ଉପସ୍ଥିତ ରହିବା ଆବଶ୍ୟକ । ମଧ୍ୟପ୍ରଦେଶ, ରାଜସ୍ଥାନ ଓ ଝାଡ଼ଖଣ୍ଡ ଭଳି ରାଜ୍ୟର ଆଇନ ଅନୁସାରେ ମହିଳା, ଅନୁସୂଚିତ ଜାତି ଓ ଜନଜାତିଙ୍କ ପାଇଁ ସବ୍-କୋରମ ବ୍ୟବସ୍ଥା କରାଯାଇଛି ।

ଗ୍ରାମସଭା ପ୍ରକୃତରେ ଏକ ଲୋକମୂଳକ ସଂସ୍ଥା । ଏହି ସଭାରେ ସ୍ୱୟଂ ଜନସାଧାରଣ ସମ୍ମିଳିତ ହୋଇ ନିଷ୍ପତ୍ତି ଗ୍ରହଣ କରିଥାନ୍ତି । ସମଗ୍ର ଦେଶରେ ଏହା ଏକମାତ୍ର ରାଜନୈତିକ ଅନୁଷ୍ଠାନ, ଯେଉଁଠି ପ୍ରତ୍ୟକ୍ଷ ଗଣତନ୍ତ୍ର ବିଦ୍ୟମାନ ରହିଛି । ଲୋକନାୟକ ଜୟପ୍ରକାଶ ନାରାୟଣଙ୍କ ଭାଷାରେ ''ଗ୍ରାମ ସଭା କହିଲେ ବୁଝାଏ ଗ୍ରାମ୍ୟ ଗଣତନ୍ତ୍ର'' । ରାଜ୍ୟରେ ଯୋଜନା ପ୍ରସ୍ତୁତ କରିବା ପାଇଁ ରାଜ୍ୟ ବିଧାନସଭାର ଯେଭଳି ଦାୟିତ୍ୱ ରହିଛି, ଗ୍ରାମପଞ୍ଚାୟତରେ ଗ୍ରାମସଭାର ସେହିଭଳି ଗୁରୁଦାୟିତ୍ୱ ରହିଛି ।

ଯୋଜନା ପ୍ରଣୟନରେ ଗ୍ରାମ୍ୟ ଜନତାଙ୍କ ସହଭାଗିତା କ୍ଷମତା ବିକେନ୍ଦ୍ରୀକରଣର ଅନ୍ୟ ଏକ ମହତ ଉଦ୍ଦେଶ୍ୟ । ଯୋଜନା ପ୍ରଣୟନରେ ଜନସାଧାରଣ ସାମିଲ ନ ହେଲେ ଯୋଜନାର କାର୍ଯ୍ୟକାରିତା ସଫଳ ହୋଇ ପାରିବ ନାହିଁ । ଯାହା ଫଳରେ ଯୋଜନାର ସୁଫଳ ସାଧାରଣ ଜନତାଙ୍କ ନିକଟରେ ପହଞ୍ଚି ପାରିବ ନାହିଁ । ଜନସାଧାରଣଙ୍କ ବିକାଶ ନିମନ୍ତେ ସେମାନଙ୍କ ହାତରେ କ୍ଷମତା ଅର୍ପଣ କରିବାର ଦାୟିତ୍ୱ ହେଉଛି ଏକମାତ୍ର ପଞ୍ଚାୟତିରାଜ ଅନୁଷ୍ଠାନର । ସେଥିପାଇଁ ରାଜସ୍ୱ ମୌଜା ସ୍ତରରେ ପଲ୍ଲୀସଭା ଓ ଗ୍ରାମପଞ୍ଚାୟତ ସ୍ତରରେ ଗ୍ରାମସଭା ବ୍ୟବସ୍ଥା କରାଯାଇଛି । କିନ୍ତୁ ବହୁ କ୍ଷେତ୍ରରେ ପଲ୍ଲୀସଭା ଓ ଗ୍ରାମସଭା ନିୟମ ଅନୁଯାୟୀ ଅନୁଷ୍ଠିତ ହେଉନାହିଁ । ନିୟମିତ ଭାବେ ବୈଠକ

ଡକାଯାଉ ନାହିଁ । ସରପଞ୍ଚ ବା କେତେକ ମୁଷ୍ଟିମେୟ ବ୍ୟକ୍ତିଙ୍କ ହସ୍ତକ୍ଷେପ ଫଳରେ ବୈଠକ ଡକା ନ ଯାଇ ମଧ୍ୟ ଅନେକ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ନିଆଯାଉଛି । 'ଗଣ' ବଦଳରରେ ଜଣଙ୍କ ନିଷ୍ପତ୍ତି ପ୍ରାଧାନ୍ୟ ଗ୍ରହଣ କରୁଛି । ଯାହା ପଞ୍ଚାୟତ ବ୍ୟବସ୍ଥାର ପରିପନ୍ଥୀ ।

ଗ୍ରାମସଭା ହେଉଛି ତୃଣମୂଳ ଗଣତନ୍ତ୍ରର କେନ୍ଦ୍ରବିନ୍ଦୁ । ଏହି ସଭା ବିକେନ୍ଦ୍ରୀକୃତ ପ୍ରଶାସନ, ଯୋଜନା ଓ ବିକାଶରେ ଅଂଶ ଗ୍ରହଣ ପାଇଁ ପ୍ରତ୍ୟେକ ଜନସାଧାରଣଙ୍କୁ ସୁଯୋଗ ଦେଇଥାଏ । ଗ୍ରାମପଞ୍ଚାୟତ ଉପରେ ନ୍ୟସ୍ତଥିବା ଦାୟିତ୍ୱ ଓ କାର୍ଯ୍ୟକ୍ରମ ସଂପର୍କରେ ଗ୍ରାମସଭା ବୈଠକରେ ଆଲୋଚନା କରାଯାଏ । ସରପଞ୍ଚ ଏହି ସବୁ କାର୍ଯ୍ୟଗ୍ରମ ପ୍ରସ୍ତୁତ କରିଥାନ୍ତି । ପ୍ରତିବର୍ଷ ଫେବୃୟାରୀ ମାସରେ ଗ୍ରାମସଭାର ଯେଉଁ ବୈଠକ ବସେ, ସେଥିରେ ଆଗାମୀ ବର୍ଷ ପାଇଁ ଗ୍ରାମପଞ୍ଚାୟତର କାର୍ଯ୍ୟକ୍ରମ ସ୍ଥିର କରାଯାଏ । ଆଗାମୀ ବର୍ଷ ପାଇଁ ବାର୍ଷିକ ଖର୍ଚ୍ଚ ଅଟକଳ ବା ବଜେଟ ବିଷୟରେ ବିଚାର କରାଯାଏ । ପ୍ରତିବର୍ଷ ଜୁନ ମାସରେ ବସୁଥିବା ବୈଠକରେ ଗ୍ରାମପଞ୍ଚାୟତ ଦ୍ୱାରା କରାଯାଇଥିବା କାର୍ଯ୍ୟକ୍ରମ ଓ ଯୋଜନାଗୁଡ଼ିକର ରିପୋର୍ଟ ଉପସ୍ଥାପନ କରାଯାଏ । ଆଗାମୀ ବର୍ଷରେ ଏହି ଯୋଜନା କିପରି କାର୍ଯ୍ୟକାରୀ ହେବ, ତାହା ଉପରେ ଆଲୋଚନା କରାଯାଏ । ପଲ୍ଲୀସଭାରେ ପ୍ରସ୍ତୁତ କରାଯାଇଥିବା ବିକାଶମୂଳକ ଯୋଜନାଗୁଡ଼ିକୁ ଗ୍ରାମ ସଭାରେ ବିଚାର କରାଯାଏ । ଗ୍ରାମସଭାରେ ଯେଉଁ ଯୋଜନାଗୁଡ଼ିକ ଅନୁମୋଦନ ଲାଭ କରେ, ତାହା ହେଉଛି ଚୂଡ଼ାନ୍ତ । ଗ୍ରାମ ସଭାରେ ଅନୁମୋଦିତ ଯୋଜନାଗୁଡ଼ିକୁ ପରେ ପରିବର୍ତ୍ତନ କରାଯାଇପାରିବ ନାହିଁ । ୨୦୧୨ ମସିହା ଅକ୍ଟୋବର ମାସରେ ଆମ ରାଜ୍ୟର ସମସ୍ତ ଗ୍ରାମପଞ୍ଚାୟତରେ ପଲ୍ଲୀସଭା ଓ ଗ୍ରାମସଭା ଅନୁଷ୍ଠିତ ହେବା ପାଇଁ ରାଜ୍ୟସରକାରଙ୍କ ପଞ୍ଚାୟତିରାଜ ବିଭାଗ ପକ୍ଷରୁ ଦୃଢ଼ ପଦକ୍ଷେପ ଗ୍ରହଣ କରାଯାଇଥିଲା । ଗ୍ରାମ ସଭାର ବିବରଣୀକୁ ଭିଡ଼ିଓ ରେକଡ଼ିଙ୍ଗ କରିବା ପାଇଁ ମଧ୍ୟ ନିର୍ଦ୍ଦେଶ ଦିଆଯାଇଥିଲା । ଗ୍ରାମସଭାର ସଶକ୍ତିକରଣ ନିମନ୍ତେ ରାଜ୍ୟ ସରକାରଙ୍କ ପକ୍ଷରୁ ଏହା ନିଶ୍ଚିତ ଭାବେ ଏକ ପ୍ରଶଂସନୀୟ ପଦକ୍ଷେପ ।

ଅନୁସୂଚିତ ଅଞ୍ଚଳ ନିମନ୍ତେ କେନ୍ଦ୍ର ସରକାର ଗ୍ରାମସଭାକୁ କେତେକ ବିଶେଷ କ୍ଷମତା ପ୍ରଦାନ କରିଛନ୍ତି । ଏହି ଆଇନ ୧୯୯୬ ମସିହା ଡ଼ିସେମ୍ବର ମାସ ୨୪ ତାରିଖଠାରୁ ଲାଗୁ ହୋଇଛି । ଏହି ନିୟମ ଅନୁସାରେ ଗ୍ରାମସଭା ଜନସାଧାରଣଙ୍କ ପରମ୍ପରା, ରୀତିନୀତି, ସାଂସ୍କୃତିକ ପରିଚୟ ରକ୍ଷା କରିବା ନିମନ୍ତେ ଉଦ୍ୟମ କରିବା ସହିତ ବିବାଦ ସମାଧାନ ନିମନ୍ତେ ପ୍ରଚଳିତ ପାରମ୍ପରିକ ପ୍ରଥାକୁ ବଜାୟ ରଖିବାକୁ ଯତ୍ନବାନ ହେବ । ଏହି ନିୟମ ଅନୁସାରେ ସରକାର କୌଣସି ଯୋଜନାରେ ଗାଁର କାହାର ଜମି ଅଧିଗ୍ରହଣ କରିବାକୁ ଚାହୁଁଥିଲେ ଗ୍ରାମସଭାର ପରାମର୍ଶ ନେବା ବାଧ୍ୟତାମୂଳକ ।

ଗଣତାନ୍ତ୍ରିକ ବ୍ୟବସ୍ଥାରେ ବିକାଶ ଓ ରାଜନୈତିକ ପ୍ରକ୍ରିୟାରେ ସାଧାରଣ ଜନତାଙ୍କ ସହଭାଗିତାର ଏକ ପ୍ରମୁଖ ମତ ହେଉଛି ପଞ୍ଚାୟତିରାଜ ଅନୁଷ୍ଠାନ । ଏହାହିଁ ପ୍ରତ୍ୟକ୍ଷ ଗଣତନ୍ତ୍ରର କାର୍ଯ୍ୟକାରିତାର ଉପଯୁକ୍ତ କ୍ଷେତ୍ର । ଦେଶର ଅଗଣିତ ସାଧାରଣ ଜନତାଙ୍କୁ ରାଜନୈତିକ ସାର୍ବଭୌମତ୍ୱ ପ୍ରଦାନ କରିବା ଦିଗରେ ଗ୍ରାମସଭା ଏକ ଉତ୍କୃଷ୍ଟ ମାଧ୍ୟମ । ଗ୍ରାମସଭାକୁ ଗ୍ରାମର ବିଧାନସଭା ଭାବେ ବର୍ଣ୍ଣନା କରାଯାଇଛି । ଗ୍ରାମସଭା ମାଧ୍ୟମରେ ପଞ୍ଚାୟତିରାଜ ଅନୁଷ୍ଠାନ ମଜବୁତ ହେବା ସହିତ ସାଧାରଣ ମଣିଷର ସଶକ୍ତିକରଣ ସମ୍ଭବ ହୋଇପାରିବ ।

ଶାନ୍ତିବଜାର, ପୋ: ଧର୍ମଶାଳା
ଜି: ଯାଜପୁର, ପିନ୍–୭୫୫୦୦୮



# ଗ୍ରାମାଞ୍ଚଳର ବିକାଶ ଓ ପଞ୍ଚାୟତିରାଜ ଶାସନ

ସରୋଜ ଦାଶ

ଗ୍ରାମାଞ୍ଚଳରେ ବିଭିନ୍ନ ଦାରିଦ୍ର୍ୟ ଦୂରୀକରଣ ଯୋଜନା ମାଧ୍ୟମରେ ଏକ ଉନ୍ନତମାନଯୁକ୍ତ ସାମାଜିକ ଭିତ୍ତିଭୂମି ପ୍ରତିଷ୍ଠା କରିବା ପାଇଁ ପଞ୍ଚାୟତିରାଜ ବ୍ୟବସ୍ଥା ଅଙ୍ଗୀକାରବଦ୍ଧ । 'ଗାଁ କଥା ଗାଁ ଲୋକ ବୁଝିବାର ପରମ୍ପରା' ଅନୁଧ୍ୟାନ କରି ଆମ ରାଜ୍ୟରେ ସ୍ୱାଧୀନତାର ପରେ ପରେ ୧୯୪୮ ମସିହାରେ ଓଡ଼ିଶା ଗ୍ରାମପଞ୍ଚାୟତ ଅଧିନିୟମଦ୍ୱାରା ଗ୍ରାମାଞ୍ଚଳରେ ଲୋକ ଶାସନର ମୂଳଦୁଆ ଦିଆଯାଇଥିଲା । 'ମାତ୍ର ବିକାଶର ଅଗ୍ରଗତି, ଦାୟିତ୍ୱ ଓ କ୍ଷମତା ବିନା ହୋଇପାରିବ ନାହିଁ । ତେଣୁ କ୍ଷମତା ହସ୍ତାନ୍ତର ଓ ବିକେନ୍ଦ୍ରୀକରଣ ଜରିଆରେ ସ୍ଥାନୀୟ ଜନ ପ୍ରତିନିଧିମାନଙ୍କଦ୍ୱାରା ନିୟନ୍ତ୍ରିତ ଓ ନିର୍ଦ୍ଦେଶିତ ଶାସନ ବ୍ୟବସ୍ଥା ପ୍ରତିଷ୍ଠା ହେବା ଆବଶ୍ୟକ।' ଏହା ଥିଲା ବଳବନ୍ତ ରାୟ ମେହେଟ୍ଟା କମିଶନଙ୍କ ମତାମତ ।

୧୯୫୨ ମସିହାର ଗୋଷ୍ଠୀ ଉନ୍ନୟନ ଯୋଜନା ଓ ପରବର୍ତ୍ତୀ ସମୟରେ ପଞ୍ଚାୟତିରାଜ ବ୍ୟବସ୍ଥାର ପ୍ରଚଳନ ଆମ ରାଜ୍ୟରେ ବ୍ଲକ୍ ସ୍ତରରେ ପଞ୍ଚାୟତ ସମିତି ମାଧ୍ୟମରେ ଏକ ଲୋକ ଶାସନର ବ୍ୟବସ୍ଥା କରାଯାଇଥିଲା । ମାତ୍ର ପରବର୍ତ୍ତୀ ସମୟରେ ପଞ୍ଚାୟତିରାଜ ବ୍ୟବସ୍ଥାର ସଂକୋଚନ ଆରମ୍ଭ ହୋଇଥିଲା । ଲୋକ ଶାସନ ଏକ ପ୍ରଚାରସର୍ବସ୍ୱ ଧ୍ୱନି ହୋଇ ରହିଗଲା । ପୁନର୍ବାର ୧୯୯୦ ମସିହାରେ ତତ୍କାଳୀନ ଦୃଢ଼ମନା ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ ପଞ୍ଚାୟତିରାଜ ଅନୁଷ୍ଠାନମାନଙ୍କୁ ଅଧିକ କ୍ରିୟାଶୀଳ ଓ ସାମାଜିକ ନ୍ୟାୟ ତଥା ଆର୍ଥିକ ବିକାଶରେ ପରିବାହକ ରୂପେ ମାନ୍ୟତା ଦିଆଯାଇଥିଲା । ଏଠାରେ ଉଲ୍ଲେଖ କରାଯାଇପାରେ ଯେ ପଞ୍ଚାୟତିରାଜ ବ୍ୟବସ୍ଥାର 'ଗାଁକୁ କାମ, ମା'କୁ ସମ୍ମାନ' ମାଧ୍ୟମରେ ଏକ ଉନ୍ନତ ଗ୍ରାମ୍ୟ ଓଡ଼ିଶା ନିର୍ମାଣ ଓ ମହିଳା ସଶକ୍ତିକରଣକୁ ଅଧିକ କ୍ରିୟାଶୀଳ କରାଯାଇଥିଲା । ଯେପର୍ଯ୍ୟନ୍ତ ଗ୍ରାମାଞ୍ଚଳଗୁଡ଼ିକର ଉନ୍ନତି ନ ହୋଇଛି ସେ ପର୍ଯ୍ୟନ୍ତ ଦେଶର ଉନ୍ନତି ହେବ ନାହିଁ ବୋଲି ବିଜୁବାବୁ ଉପଲବ୍ଧି କରିଥିଲେ ।

୭୩ତମ ସାମ୍ବିଧାନିକ ସଂଶୋଧନ ଆଇନ ପରିପ୍ରେକ୍ଷୀରେ ଆମ ପଞ୍ଚାୟତିରାଜ ବ୍ୟବସ୍ଥାକୁ ଅଧିକ ସକ୍ରିୟ କରିବା ନିମନ୍ତେ ରାଜ୍ୟ ପଞ୍ଚାୟତ ଆଇନରେ ବ୍ୟାପକ ସଂଶୋଧନ କରାଯାଇଅଛି । ଗ୍ରାମାଞ୍ଚଳର ଆଞ୍ଚଳିକ ସମସ୍ୟାଗୁଡ଼ିକର ସମାଧାନ ପାଇଁ ଲୋକମାନଙ୍କୁ ସାହାଯ୍ୟ କରିବାର ଦାୟିତ୍ୱ ପଞ୍ଚାୟତିରାଜ ଅନୁଷ୍ଠାନଗୁଡ଼ିକୁ ଦିଆଯାଇଛି । ଭିତ୍ତିଭୂମି, ପ୍ରାକୃତିକ ସମ୍ବଳର ପରିଚାଳନା ଓ କର୍ମଯୋଗାଣ ସୃଷ୍ଟି କରିବାର ଏକ ଉନ୍ନତ ଯୋଜନା ପ୍ରସ୍ତୁତ କରିବା ମଧ୍ୟ ପଞ୍ଚାୟତିରାଜ ଅନୁଷ୍ଠାନର ଦାୟିତ୍ୱ । ଉନ୍ନତିମୂଳକ ତଥା ସାମାଜିକ ନ୍ୟାୟଜନିତ କାର୍ଯ୍ୟକୁ ଅଗ୍ରାଧିକାର ଦେବା ସଂଗେସଂଗେ ପ୍ରତ୍ୟେକ ମୌଳିକ ସେବାରେ ଜନସହଭାଗିତାକୁ ଉତ୍ସାହିତ କରିବା ଏହି ଅନୁଷ୍ଠାନର ଏକ ଗୁରୁ ଦାୟିତ୍ୱ । ବିଶେଷକରି ଗ୍ରାମସଭା, ପଲ୍ଲୀସଭା ଓ ଅନ୍ୟାନ୍ୟ ସ୍ଥାୟୀ କମିଟିର ଜନ ପ୍ରତିନିଧି ତଥା ଲୋକମାନଙ୍କର ଗୁଣାତ୍ମକ ସହଭାଗିତା ଓ ପରାମର୍ଶକୁ ଆଧାର କରାଯାଇ ଲୋକଶାସନର ବ୍ୟବସ୍ଥାକୁ ପରିଚାଳନା କରାଯାଇଥାଏ ।

ଏଭଳି ମହତ ଶାସନ ବ୍ୟବସ୍ଥାକୁ ସାକାର କରିବା ଏକ କଷ୍ଟକର ବ୍ୟାପାର । ମାତ୍ର ଆମ ରାଜ୍ୟ ସରକାର ପ୍ରଚଳିତ ତ୍ରିସ୍ତରୀୟ ପଞ୍ଚାୟତିରାଜ ବ୍ୟବସ୍ଥାକୁ ଅଧିକ ଲୋକାଭିମୁଖୀ କରିବା ଉଦ୍ଦେଶ୍ୟରେ ଉଦ୍ୟମ ଜାରି ରଖିଛନ୍ତି । ପ୍ରଭାବଶାଳୀ କ୍ଷମତା ହସ୍ତାନ୍ତର ପ୍ରକ୍ରିୟା ଯଥା- କାର୍ଯ୍ୟ, କର୍ମଚାରୀ ଓ ପାଣ୍ଠିଜନିତ ହସ୍ତାନ୍ତରଣ କ୍ଷେତ୍ରରେ ଅନେକଗୁଡ଼ିଏ ବିକାଶମୂଳକ ପଦକ୍ଷେପ ଗ୍ରହଣ କରିଛନ୍ତି । ଏହି ପରିପ୍ରେକ୍ଷୀରେ ଆମେ ଯଦି ପଞ୍ଚାୟତିରାଜ

ଶାସନ ବ୍ୟବସ୍ଥାର ସମୀକ୍ଷା କରୁଁ, ତେବେ ତ୍ରିସ୍ତରୀୟ ପଞ୍ଚାୟତିରାଜ ବ୍ୟବସ୍ଥାର ୭୩ତମ ସଂଶୋଧନ ଆଇନର ଉଦ୍ଦେଶ୍ୟକୁ ସାକାର କରୁଅଛି ଏବଂ ସମସ୍ତ ଗ୍ରାମାଞ୍ଚଳର ଜନସାଧାରଣ ଓ ଜନ ପ୍ରତିନିଧିଙ୍କ ସହଭାଗିତାକୁ ପ୍ରୋତ୍ସାହିତ କରୁଅଛି ବୋଲି ଉପଲବ୍ଧି କରାଯାଇପାରେ । ଆମ ଦେଶର ବିଭିନ୍ନ ରାଜ୍ୟରେ ପ୍ରଚଳିତ ପଞ୍ଚାୟତିରାଜ ଶାସନ ବ୍ୟବସ୍ଥାକୁ ତର୍ଜମା କଲେ ଏହା ସ୍ୱୀକାର କରିବାକୁ ପଡ଼ିବ ଯେ, ଆମ ରାଜ୍ୟର ବ୍ଲକ୍ ଶାସନ ବ୍ୟବସ୍ଥା ସହଭାଗିତା ଓ ସମ୍ବେଦନଶୀଳ ପ୍ରଶାସନର ଆବଶ୍ୟକତାକୁ ସାକାର କରୁଥିବା ପ୍ରଶାସନକୁ ହିଁ ବୁଝାଯାଏ । ଆଉ ଗୋଟିଏ କଥା– ପଞ୍ଚାୟତିରାଜ ବ୍ୟବସ୍ଥାର ଜଣେ ନିର୍ବାଚିତ ଜନପ୍ରତିନିଧି ଗ୍ରାମାଞ୍ଚଳର ବିକାଶ ଓ ସାମାଜିକ ନ୍ୟାୟରେ ବ୍ରତୀ ହେବା ପରିବର୍ତ୍ତେ ଦୁର୍ନୀତିର ପୂଜାରୀ ହେଉଛନ୍ତି ବୋଲି ସାଧାରଣରେ ଆଲୋଚନା ହୋଇଥାଏ । କିନ୍ତୁ ପ୍ରକୃତରେ ଯଦି ଏହାର ମୂଲ୍ୟାୟନ କରାଯାଏ ଜଣେ ନିର୍ବାଚିତ ପ୍ରତିନିଧି ନିଃସ୍ୱାର୍ଥପର ଭାବେ ପ୍ରଶାସନର ସହାୟକ ହୋଇଥାଏ । ସମ୍ବେଦନଶୀଳ ପ୍ରଶାସନ ଜନସାଧାରଣଙ୍କର ସହଭାଗିତା ଓ ପରାମର୍ଶ ପ୍ରକ୍ରିୟା ବିନା ସମ୍ଭବ ନୁହେଁ । ପଞ୍ଚାୟତିରାଜ ଅନୁଷ୍ଠାନଦ୍ୱାରା ପରିଚାଳିତ କାର୍ଯ୍ୟକ୍ରମରେ ଅନ୍ୟାନ୍ୟ ବିଭାଗ ଭଳି ଠିକାଦାରୀ ବ୍ୟବସ୍ଥାର ପ୍ରତିବନ୍ଧକ ରହିଅଛି । ମାତ୍ର ଏହି ବିଭାଗଦ୍ୱାରା ସଂପାଦିତ ହେଉଥିବା କାର୍ଯ୍ୟ ନିଶ୍ଚିତଭାବେ ଉତ୍କୃଷ୍ଟମାନର ଏଥିରେ ସନ୍ଦେହ ନାହିଁ । ଏହି ବ୍ୟବସ୍ଥାରେ ଜଣେ ସାଧାରଣ ନାଗରିକର ଅଧିକାର ଓ ଅଭିଯୋଗର ପ୍ରତିକାର ନିମନ୍ତେ ଯେତିକି ଗୁରୁତ୍ୱ ପ୍ରଦାନ କରାଯାଇଛି, ତାହା ଅନ୍ୟ କୌଣସି ସରକାରୀ ବିଭାଗର କାର୍ଯ୍ୟକାରିତାରେ ପରିଲକ୍ଷିତ ହୋଇନଥାଏ ।

'ପଲ୍ଲୀର ଲୋକେ ସଭାକରି, ଯୋଜନା କରିବେ ତିଆରି
ଗ୍ରାମସଭା ଦେଲେ ମଞ୍ଜୁରୀ, ଯୋଜନା ହେବ କାର୍ଯ୍ୟକାରୀ ।'

ଏହି ପଂକ୍ତିଟିର ଆଭିମୁଖ୍ୟ ମହତ । ପଲ୍ଲୀସଭାକୁ କଳି ସଭା ସହିତ ତୁଳନା କରିବା ଅବଶ୍ୟ ଏକ ସକାରାତ୍ମକ ଚିନ୍ତାଧାରା । କଳିର ଅନ୍ୟନାମ ବାଦ ବିଚାର, ଅର୍ଥାତ୍ ବାଦ ବିଚାର ବିନା ଗ୍ରାମାଞ୍ଚଳର ବିକାଶ ଅସମ୍ଭବ । ତେଣୁ ଆମ ରାଜ୍ୟରେ ପଞ୍ଚାୟତିରାଜ ବ୍ୟବସ୍ଥାର ମୂଳଦୁଆ ରୂପେ କାର୍ଯ୍ୟକାରିତା ପାଇଁ ପଲ୍ଲୀସଭା ଓ ଗ୍ରାମସଭାଗୁଡ଼ିକରେ ପ୍ରଭାବଶାଳୀ ଜନ ଅଂଶଗ୍ରହଣ ଓ ସହଭାଗିତାକୁ ଅଧିକ କ୍ରିୟାଶୀଳ କରିବା ପାଇଁ ସରକାର ଜନ ପ୍ରତିନିଧି ଓ ସ୍ୱେଚ୍ଛାସେବୀ ସଂଗଠନଗୁଡ଼ିକ ଯତ୍ନବାନ ହେବାର ଆବଶ୍ୟକତା ରହିଅଛି ।

ଅତୀତରେ ଗ୍ରାମପଞ୍ଚାୟତରେ ଆଞ୍ଚଳିକ ବିକାଶ ତଥା ସାମାଜିକ ନ୍ୟାୟ ଏକ ନିର୍ଦ୍ଦିଷ୍ଟ କ୍ଷମତାସମ୍ପନ୍ନ ଗୋଷ୍ଠୀର ପ୍ରରୋଚନାରେ ପରିଚାଳିତ ହେଉଥିଲା । ମାତ୍ର ପ୍ରଚଳିତ ପଞ୍ଚାୟତିରାଜ ବ୍ୟବସ୍ଥାରେ, ବଞ୍ଚିତ ଓ ମହିଳାମାନଙ୍କୁ ଉପଯୁକ୍ତ ସ୍ଥାନ ଦେବାଦ୍ୱାରା ବିକାଶର ସଂଜ୍ଞା ପରିବର୍ତ୍ତିତ ହୋଇଛି ତଥା ପରିଚାଳନାର ମାନ ବୃଦ୍ଧି ପାଇଛି । ଆମେ ଯଦି, କଳି କଥାକୁ ଆଲୋଚନା କରୁଁ, ତେବେ ଜନସହଭାଗିତା କିମ୍ବା ସ୍ୱଚ୍ଛ ସରକାର ପ୍ରତିଷ୍ଠା ଦିଗରେ ତାହା ଅଭିନବ ପରିବର୍ତ୍ତନ ଆଣିଅଛି । ବିକାଶମୂଳକ କାର୍ଯ୍ୟର ପରିଚାଳନା ଦାୟିତ୍ୱ ମଧ୍ୟ ମହିଳା ସ୍ୱୟଂସହାୟକ ଦଳଗୁଡ଼ିକୁ ଦେବାପାଇଁ ଅଗ୍ରାଧିକାର ଦିଆଯାଉଅଛି । ପରିବର୍ତ୍ତନ ଏକ ସତ୍ୟ ଓ ଏହି ସତ୍ୟକୁ ଯୁଗୋପଯୋଗୀ କରିବା ପାଇଁ ପଞ୍ଚାୟତିରାଜ ବ୍ୟବସ୍ଥା ଏକ ଅଭିନବ ପ୍ରୟାସ ।

ମୌଳିକ ସେବା ପ୍ରଦାନ କରିବା କ୍ଷେତ୍ରରେ ଗ୍ରାମପଞ୍ଚାୟତ ଏକ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ଗ୍ରହଣ କରିଛି । ପ୍ରାଥମିକ ଶିକ୍ଷା, ପ୍ରାଥମିକ ସ୍ୱାସ୍ଥ୍ୟ, ସାଧାରଣ ବଣ୍ଟନ ବ୍ୟବସ୍ଥା ଇତ୍ୟାଦି କ୍ଷେତ୍ରରେ ଜନ ପ୍ରତିନିଧିମାନଙ୍କର ପ୍ରତ୍ୟକ୍ଷ ପରିଚାଳନା ଓ ମାର୍ଗଦର୍ଶନ, ଏହାକୁ ଅଧିକ ଦୁର୍ନୀତିମୁକ୍ତ କରିଅଛି । ଗ୍ରାମପଞ୍ଚାୟତ ଶାସନକୁ ଅଧିକ କ୍ରିୟାଶୀଳ କରିବା ଉଦ୍ଦେଶ୍ୟରେ ପ୍ରତ୍ୟେକ ଗ୍ରାମପଞ୍ଚାୟତଗୁଡ଼ିକୁ ଅତିରିକ୍ତ ସଂପ୍ରସାରଣ ଅଧିକାରୀଙ୍କ ସମେତ ଅଧିକ ପାଣ୍ଠି ଓ କାର୍ଯ୍ୟ ଦିଆଯାଇଅଛି ।

ଉତ୍ତମ ପ୍ରଶାସନ ପାଇଁ ସୂଚନାପ୍ରାପ୍ତି ଅଧିକାରରୁ ସ୍ୱଚ୍ଛତାର ଆରମ୍ଭ ହୋଇଥାଏ । ସୂଚନା ପ୍ରାପ୍ତି ଅଧିକାର ପ୍ରତ୍ୟେକ ନାଗରିକର ଏକ ମୌଳିକ ଅଧିକାର । ଏହି ଅଧିକାର ବଳରେ ଯେକୌଣସି ବ୍ୟକ୍ତି ପଞ୍ଚାୟତିରାଜ ବ୍ୟବସ୍ଥାର ଅନୁଷ୍ଠାନଦ୍ୱାରା କାର୍ଯ୍ୟକାରୀ ହେଉଥିବା ସମସ୍ତ ଉନ୍ନୟନମୂଳକ ଯୋଜନା, ସେଥିନିମନ୍ତେ ମଞ୍ଜୁରୀ ଅର୍ଥର ପରିମାଣ, ପ୍ରକଳ୍ପର କାର୍ଯ୍ୟକାରିତା ତଥା ଖର୍ଚ୍ଚ ଆଦି ପ୍ରତ୍ୟେକ ବିଷୟରେ ଅବଗତ ହୋଇପାରିବେ । ପଞ୍ଚାୟତିରାଜ ବିଭାଗ ବର୍ତ୍ତମାନ ଏହାର ଆଇନ, ନିୟମ, ନିର୍ଦ୍ଦେଶନାମା, ଯୋଜନା, ମାର୍ଗଦର୍ଶିକା ଓ ପାଣ୍ଠି ସଂପର୍କରେ ସୂଚନା ଓଡ଼ିଶା ସରକାରଙ୍କର ୱେବ୍‌ସାଇଟ୍– http://orissapanchayat.gov.in ମାଧ୍ୟମରେ ସାଧାରଣ ଜନତାଙ୍କ ପାଖରେ ପହଞ୍ଚାଇ ପାରିଛି, ସେହିଭଳି ତ୍ରିସ୍ତରୀୟ ପଞ୍ଚାୟତିରାଜ ଅନୁଷ୍ଠାନଦ୍ୱାରା ବ୍ୟୟ କରାଯାଉଥିବା ଅର୍ଥକୁ ସୁପରିଚାଳନା କରିବା ପାଇଁ Priasoft, Rural soft,

PAMIS and Betan ନାମରେ ୪ଗୋଟି Software packag କାର୍ଯ୍ୟକାରୀ କରାଯାଇଅଛି । ପଞ୍ଚାୟତିରାଜ ବିଭାଗ ୱେବ୍‌ସାଇଟ୍‌ରେ ସାଧାରଣ ଲୋକଙ୍କର ଅଭିଯୋଗକୁ ସମ୍ମାନ ଦିଆଯାଇ ଓ ଅଭିଯୋଗର ସତ୍ୟତା ଉପରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ପାଇଁ ଏକ ସ୍ୱତନ୍ତ୍ର ସ୍ତମ୍ଭ ରହି ସାଧାରଣ ଲୋକମାନଙ୍କର ଅଭିଯୋଗ ତଥା ଅଭିଯୋଗଜନିତ ଫଏସଲା ପାଇଁ ଦେୟମୁକ୍ତ ସଂଯୋଗ ହେଲ୍‌ପ ଲାଇନର ଟେଲିଫୋନ୍

ନଂ-୧୫୫୩୩୫ର ବ୍ୟବସ୍ଥା ରହିଅଛି । ଏହାଛଡ଼ା ପଞ୍ଚାୟତିରାଜ ଅନୁଷ୍ଠାନର କାର୍ଯ୍ୟକାରିତା କ୍ଷେତ୍ରରେ ଦୁର୍ନୀତି କିମ୍ବା ଭ୍ରଷ୍ଟାଚାରଜନିତ ଅଭିଯୋଗର ବିଚାର ପାଇଁ ମଧ୍ୟ ପଞ୍ଚାୟତିରାଜ ବିଭାଗ/ଜିଲ୍ଲା/ବ୍ଲକ୍ ସ୍ତରରେ ଭିଜିଲାନ୍ସ କମିଟିମାନ କାର୍ଯ୍ୟ କରି ଆସୁଛନ୍ତି । ସେହିଭଳି ମଧ୍ୟ ରାଜ୍ୟ ସରକାରଙ୍କର ମାନ୍ୟବର ଲୋକପାଳ ବ୍ୟବସ୍ଥାଦ୍ୱାରା ପଞ୍ଚାୟତିରାଜ କାର୍ଯ୍ୟ ପରିସରକୁ ଦୁର୍ନୀତିମୁକ୍ତ କରିବା ପାଇଁ ପ୍ରୟାସ ଜାରି ରହିଛି । ଏଠାରେ ଉଲ୍ଲେଖଯୋଗ୍ୟ ଯେ ପଞ୍ଚାୟତିରାଜ ବିଭାଗ ବ୍ୟାପକ ପ୍ରଶିକ୍ଷଣ କାର୍ଯ୍ୟକ୍ରମ ମାଧ୍ୟମରେ ନିର୍ବାଚିତ ଲୋକ ପ୍ରତିନିଧିମାନଙ୍କର ସାମର୍ଥ୍ୟ ବୃଦ୍ଧିର ନିରନ୍ତର ପ୍ରୟାସ ଜାରି ରଖିଛନ୍ତି । ସେହିଭଳି ଗ୍ରାମାଞ୍ଚଳରେ ଉତ୍ପାଦିତ କାରିଗରୀ ତଥା ପାରିମ୍ପରିକ ହସ୍ତକଳାଗୁଡ଼ିକ ପ୍ରୋତ୍ସାହନ ପାଇଁ ବିଭିନ୍ନ ଜିଲ୍ଲା ଓ ରାଜ୍ୟସ୍ତରୀୟ ମେଳାର ଆୟୋଜନ ମଧ୍ୟ କରୁଅଛି ।

ଏଭଳି ଉଦ୍ୟମ ସତ୍ତ୍ୱେ ସାଧାରଣ ଜନତା ଯଦି ଉପଲବ୍ଧି କରନ୍ତି ଆମ ରାଜ୍ୟରେ ପଞ୍ଚାୟତିରାଜ ଅନୁଷ୍ଠାନଗୁଡ଼ିକ ଲୋକ ଶାସନର ମାଧ୍ୟମ ହୋଇପାରିବ ନାହିଁ, ତେବେ ସମାଜର ସାମାଜିକ ଚେତନାର ପୂର୍ଣ୍ଣବିନ୍ୟାସ ହେବାର ଆବଶ୍ୟକତା ରହିଛି । ପଞ୍ଚାୟତିରାଜ ଏଭଳି ଏକ ଲୋକଶାସନର ମାଧ୍ୟମ ଯାହାଦ୍ୱାରା କି ଗ୍ରାମୀଣ ଓଡ଼ିଶାକୁ ଜୀବନଜୀବିକା ସୁରକ୍ଷା ଦେବା ପାଇଁ ରୋଜଗାର ଓ ଜନପ୍ରଶାସନର ସୁଯୋଗ ଓ ସୁବିଧା ଯୋଗାଇଥାଏ । ଏକ ସ୍ୱଚ୍ଛ ଓ ସମ୍ବେଦନଶୀଳ ମାନସିକତାର ପ୍ରୟୋଜନକୁ ଆମେ ଉପଲବ୍ଧି କରୁଁ । ଯଦି ଏହି ମାନସିକତାର ଅଭ୍ୟୁଦୟ ନ ଘଟେ, ତେବେ ପଞ୍ଚାୟତିରାଜ ଶାସନ ଲୋକଶାସନର ଏକ ସ୍ୱରୂପ ହେବା କଷ୍ଟସାଧ୍ୟ । ଏହି ପରିପ୍ରେକ୍ଷୀରେ ଜାତିର ଜନକଙ୍କ ମହତ ବାଣୀ ସ୍ମୃତିଚାରଣ ଯୋଗ୍ୟ । 'ଭାରତର ପ୍ରତ୍ୟେକ ମହିଳା ଓ ପୁରୁଷ ନିଜ ନିଜର ଦାୟିତ୍ୱ ଉପଲବ୍ଧି କରି କାମରେ ଯଦି ଲଗାଇବେ ତେବେ, ତାହା ହିଁ ହେବ ପ୍ରକୃତ ପଞ୍ଚାୟତିରାଜ ।' ଏହାଦ୍ୱାରା ଏକ ଉତ୍ତମ ଓ ପାରଦର୍ଶିତା ଲୋକଶାସନ ପ୍ରଦାନ କରିବାରେ ପଞ୍ଚାୟତିରାଜ ବ୍ୟବସ୍ଥା ସକ୍ଷମ ହେବ ।

ଉପନିର୍ଦ୍ଦେଶକ
ରାଜ୍ୟ ଗ୍ରାମ୍ୟ ଉନ୍ନୟନ ପ୍ରତିଷ୍ଠାନ
ଭୁବନେଶ୍ୱର-୭୫୧୦୧୨



# ଓଡ଼ିଶାର ଗର୍ବ ଓ ଗୌରବର ପ୍ରତୀକ ବିଜୁ ପଟ୍ଟନାୟକ

ନଗେନ୍ଦ୍ର ନାଥ ପଟ୍ଟନାୟକ

ସ୍ୱାଧୀନୋତ୍ତର ଭାରତବର୍ଷରେ କଳିଙ୍ଗର ଗୌରବମୟ ଐତିହ୍ୟ, ଅସ୍ମିତା ଓ ସ୍ୱାଭିମାନକୁ ଆନ୍ତର୍ଜାତିକ ସ୍ତରରେ ପ୍ରତିଷ୍ଠିତ କରିବା ପାଇଁ ଯେଉଁ ମୁଷ୍ଟିମେୟ ଜନନେତା ଆଜୀବନ ପ୍ରୟାସ କରିଥିଲେ, ସେମାନଙ୍କ ମଧ୍ୟରେ ମୁକୁଟ ବିହୀନ ସମ୍ରାଟ ଥିଲେ ବିଜୁ ପଟ୍ଟନାୟକ । ସେ ଥିଲେ ଏକାଧାରାରେ ଜଣେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ, ବିଚକ୍ଷଣ ରାଜନୀତିଜ୍ଞ, ପ୍ରସିଦ୍ଧ ସମାଜସେବୀ, ଖ୍ୟାତନାମା ଶିଳ୍ପପତି ତଥା ଦୁର୍ଦ୍ଧର୍ଷ ବୈମାନିକ ।

ବିଜୁବାବୁ ୧୯୧୬ ମସିହା ମାର୍ଚ୍ଚ ମାସ ୫ ତାରିଖ ଦିନ ଐତିହାସିକ କଟକ ସହରରେ ପିତା ଲକ୍ଷ୍ମୀନାରାୟଣ ପଟ୍ଟନାୟକ ଓ ମା' ଆଶାଲତାଙ୍କ କୋଳମଣ୍ଡନ କରି ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପୈତୃକ ଗୃହ ଗଞ୍ଜାମ ଜିଲ୍ଲାର ଭଞ୍ଜନଗର ସବ୍‌ଡିଭିଜନ୍ ଅନ୍ତର୍ଗତ ନୂଆ ଗ୍ରାମରେ । ମାତ୍ର ତାଙ୍କର ବାଲ୍ୟ ଶିକ୍ଷାର ଆରମ୍ଭ ହୋଇଥିଲା କଟକରେ । ଶୈଶବରୁ ସେ ଥିଲେ ଦୁଃସାହସୀ ଓ ଏକଜିଦିଆ । ରେଭେନ୍ସା କଲେଜିଏଟ୍ ସ୍କୁଲରେ ଅଧ୍ୟୟନ କରୁଥିଲା ବେଳେ ତାଙ୍କ ଭିତରେ ଅଙ୍କୁରିତ ସ୍ୱଦେଶପ୍ରୀତି ଓ ଉଦ୍ଦାମତା ବା ସାହସିକତା ତାଙ୍କୁ ସ୍ୱାଧୀନତା ସଂଗ୍ରାମ ଆଡକୁ ଟାଣି ନେଇଥିଲା । ପିଲାବେଳୁ ତାଙ୍କ ମନରେ ଉଙ୍କି ମାରିଥିଲା ଅସୁମାରୀ ସ୍ୱପ୍ନ ଏବଂ ପରବର୍ତ୍ତୀ କାଳରେ ଏହା ତାଙ୍କର ଅସ୍ଥିମଜ୍ଜାଗତ ହୋଇଯାଇଥିଲା । ରେଭେନ୍ସା କଲେଜିଏଟ୍ ସ୍କୁଲରେ ଅଧ୍ୟୟନ କରୁଥିଲା ବେଳେ ତାଙ୍କ ସ୍ୱପ୍ନ ସାକାର ହୋଇଥିଲା ଓ ସ୍କୁଲର ଦଳଗତ ଚମ୍ପିଆନ ହୋଇ ମେଡାଲ ହାସଲ କରି ଗୌରବମଣ୍ଡିତ ହୋଇଥିଲା । ସେହିପରି, ତାଙ୍କର କ୍ରୀଡାନୈପୁଣ୍ୟତା ଯୋଗୁଁ ରେଭେନ୍ସା ମହାବିଦ୍ୟାଳୟ କ୍ରୀଡା କ୍ଷେତ୍ରରେ ସୁଖ୍ୟାତି ଅର୍ଜନ କରିଥିଲା ।

କଟକରେ ବ୍ରିଟିଶ ଏୟାରୱେଜ୍‌ର ହେଲିକପ୍ଟରକୁ ଛୁଇଁବା ପାଇଁ ବିଜୁ ଏତେ ବ୍ୟାକୁଳ ଥିଲେ ଯେ ଲହୁଲୁହାଣରେ ଜୁଡୁବୁଡୁ ହୋଇ ମଧ୍ୟ ସେ ହାତ ବଢାଇ ତାକୁ ସ୍ପର୍ଶ କରିଥିଲେ । ନିଜ ସ୍ୱପ୍ନକୁ ବାସ୍ତବ ରୂପ ଦେବାକୁ ଯାଇ ସେ ବ୍ରିଟିଶ ରୟାଲ ଏୟାର ଫୋର୍ସରେ ପାଇଲଟ ପାଇଁ ହେଉଥିବା ପରୀକ୍ଷାରେ ପ୍ରାର୍ଥୀ ହୋଇ ପରୀକ୍ଷା ଦେଇଥିଲେ । ସ୍ନାତକ ଶିକ୍ଷା ନସରୁଣୁ ସେ ମନୋନୟନରେ ଶୀର୍ଷ ସ୍ଥାନ ଦଖଲ କରି ପାଇଲଟ୍ ଭାବେ ଚାକିରି ଜୀବନ ଆରମ୍ଭ କରିଥିଲେ । ତେଣୁ ତାଙ୍କର ନୀଳ ଆକାଶରେ ଉଡିବା ସ୍ୱପ୍ନ ପୁଣି ଥରେ ଜୀବନ୍ତ ହୋଇ ସାକାର ହୋଇଥିଲା । ବ୍ରିଟିଶ ଅଧୀନରେ କାର୍ଯ୍ୟରତ ହୋଇ ବି ସେ ସ୍ୱାଧୀନତା ସଂଗ୍ରାମୀଙ୍କୁ ନିଜ ନିବାସରେ ଆଶ୍ରୟ ଦେଇ ସ୍ୱାଧୀନତାର ବାର୍ତ୍ତା ପ୍ରଚାର କରିଥିଲେ ଏବଂ ଏହି ରାଜଦ୍ରୋହ ଅଭିଯୋଗରେ ଅଭିଯୁକ୍ତ ହୋଇ କାରାବରଣ ବି କରିଥିଲେ । ତେବେ ଏକ ନିଷ୍ଠାପର ଓ ଦୁର୍ଦ୍ଧର୍ଷ ପାଇଲଟ୍ ଭାବେ କାର୍ଯ୍ୟ କରୁଥିବା ଯୋଗୁଁ ତାଙ୍କୁ ଖଲାସ କରିଦିଆ ଯାଇଥିଲା । ଥରେ ଜାତିପ୍ରାଣ ମହାତ୍ମା ଗାନ୍ଧୀ ଓଡ଼ିଶାରେ ପଦାର୍ପଣ କରି କଟକସ୍ଥିତ ସ୍ୱରାଜ ଆଶ୍ରମରେ ଅବସ୍ଥାନ କରୁଥିଲା ବେଳେ ସେଇ ଉଦ୍ଦାମ ବାଳକ ବିଜୁବାବୁ ତାଙ୍କୁ ଦେଖିବା ପାଇଁ ଖୋଦ୍ ସେଠାକୁ ଯାଇଥିବା ସମୟରେ ଇଂରେଜ ପୁଲିସ୍‌ଙ୍କ ଲାଠି ମାଡରେ ତାଙ୍କର ମୁଣ୍ଡ କ୍ଷତବିକ୍ଷତ ହୋଇଗଲା । ଏହି ଘଟଣାରେ ସେ ମର୍ମାହତ ଅବା ବିଚଳିତ ହୋଇ ନଥିଲେ । ତେଣୁ ତାଙ୍କର ନିଜ ଓଡ଼ିଆ ଜାତି ପ୍ରତି ଥିବା ଦରଦ, ତାଙ୍କର ନିର୍ଭୀକତା ବା ସାହସିକତା ସର୍ବୋପରି ଦେଶପ୍ରୀତି ଯେ କେତେ, ତାହା ଏହି ଘଟଣାରୁ ହିଁ ସହଜରେ ବାରି ହୋଇଯାଏ ।

୧୯୬୩ ମସିହାରେ ବିଜୁବାବୁଙ୍କୁ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେବାକୁ ପଡିଥିଲା, ତାହା କେବଳ ଥିଲା କାମରାଜ

ଯୋଜନା ମୁତାବକ । ୧୯୬୪ ମସିହାରେ ଭୁବନେଶ୍ୱରଠାରେ ଅନୁଷ୍ଠିତ ଅଖିଳ ଭାରତ କଂଗ୍ରେସ କମିଟିର ସାଧାରଣ ଅଧିବେଶନ ତାଙ୍କ ଅକ୍ଳାନ୍ତ ଉଦ୍ୟମରେ ହିଁ ସମ୍ଭବ ହୋଇଥିଲା । ୧୯୬୮ ମସିହାରେ ସେ ରାଜ୍ୟ ସଭାକୁ ନିର୍ଦ୍ୱନ୍ଦ୍ୱରେ ନିର୍ବାଚିତ ହୋଇଥିଲେ ।

ଜଣେ ମହାନ ବିପ୍ଳବୀ ରୂପେ ବିଜୁ ପଟ୍ଟନାୟକଙ୍କର ଖ୍ୟାତି ବିଶ୍ୱଜନବିଦିତ । ସେ ନିଜ ଜୀବନକୁ ବାଜି ଲଗାଇ ସାମ୍ରାଜ୍ୟବାଦୀ ଶକ୍ତି ବିରୁଦ୍ଧରେ ସଂଗ୍ରାମ କରିଥିଲେ । ଇଣ୍ଡୋନେସିଆର ମୁକ୍ତି ସଂଗ୍ରାମରେ ନିଜର ଡାକୋଟା ବିମାନ ଦ୍ୱାରା ଡଚ୍ ଶାସନର ମରଣ ଯନ୍ତାରୁ ତୁଙ୍ଗ ନେତାମାନଙ୍କୁ ଉଦ୍ଧାର କରିବା କିଛି କମ୍ ସାହସିକତାର କାର୍ଯ୍ୟ ନଥିଲା । ପ୍ରତ୍ୟୁତ୍ପନ୍ନମତି ବିଜୁବାବୁଙ୍କର ଅନୁରୂପ ବୀରତ୍ୱ ପାଇଁ ୧୯୯୬ ମସିହାରେ ଇଣ୍ଡୋନେସିଆର ଭୂମିପୁତ୍ର ରୂପେ ବିବେଚିତ ହୋଇଥିଲେ ଏବଂ ତାଙ୍କୁ ଇଣ୍ଡୋନେସିଆର ବେସାମରିକ ସମ୍ମାନ, ବୀର ତୁଙ୍ଗ ଯଶ ପ୍ରଦାନ କରାଯାଇଥିଲା । ତା'ଛଡା ଋଷିଆର ସର୍ବୋଚ୍ଚ ବେସାମରିକ ସମ୍ମାନର ବି ଅଧିକାରୀ ଥିଲେ ସେ । ବିଜୁବାବୁ ଥିଲେ ଏକ ବର୍ଣ୍ଣାଢ୍ୟ ବ୍ୟକ୍ତିତ୍ୱର ଅଧିକାରୀ । ସମଗ୍ର ଦେଶ ପାଇଁ ସେ ଥିଲେ ଗର୍ବ ଓ ଗୌରବ । ପାକିସ୍ଥାନର ପ୍ରଥମ କାଶ୍ମୀର ଆକ୍ରମଣ ସମୟରେ ତାଙ୍କ ବିମାନ ପ୍ରଥମେ ଶ୍ରୀନଗରରେ ଖାଦ୍ୟ ପଦାର୍ଥ ଧରି ଅବତରଣ କରିଥିଲା । ୧୯୬୨ ମସିହାରେ ଚୀନ୍ ଯୁଦ୍ଧ ବେଳେ ସେ ତତ୍କାଳୀନ ପ୍ରଧାନମନ୍ତ୍ରୀ ନେହେରୁଙ୍କର ପରାମର୍ଶଦାତା ରୂପେ ନିଯୁକ୍ତି ପାଇଥିଲେ । ବିଜ୍ଞାନକୁ ଲୋକପ୍ରିୟ କରିବା ଉଦ୍ଦେଶ୍ୟରେ ବିଜୁବାବୁଙ୍କ କଳିଙ୍ଗ ପୁରସ୍କାର ଆଜି ଆନ୍ତର୍ଜାତିକ ସ୍ତରରେ ଓଡ଼ିଶାକୁ ପରିଚିତ କରାଇଛି । ପ୍ରତ୍ୟେକ ବର୍ଷ ଏହି ପୁରସ୍କାର ୟୁନିସ୍କୋ ସଂସ୍ଥା ତରଫରୁ ବିଶିଷ୍ଟ ବୈଜ୍ଞାନିକମାନଙ୍କୁ ପ୍ରଦାନ କରାଯାଏ ।

ଉତ୍କଳର ନୌବାଣିଜ୍ୟ ପରମ୍ପରା ଉଜ୍ଜୀବିତ କରି ସୁଦୂରପ୍ରସାରୀ କରିବା ପାଇଁ ତାଙ୍କ ଉଦ୍ୟମରେ ପ୍ରତିଷ୍ଠା ହୋଇଥିଲା ପାରାଦୀପ ବନ୍ଦର । ଓଡ଼ିଶା ଭଳି ଗରିବ ରାଜ୍ୟର ପ୍ରଗତି ପାଇଁ ଏହି ବନ୍ଦରର ଯେ ଜରୁରୀ ଆବଶ୍ୟକତା ରହିଛି, ତାହା ସେ ଅତି ପ୍ରାଞ୍ଜଳ ଭାବରେ ବୁଝାଇ ଦେଇଥିଲେ ତତ୍କାଳୀନ ପ୍ରଧାନମନ୍ତ୍ରୀ ନେହେରୁଙ୍କୁ । ପ୍ରଚୁର ଖଣିଜ ସମ୍ପଦରେ ଭରପୂର ଓଡ଼ିଶାକୁ ଏକ ଶିଳ୍ପ ସମୃଦ୍ଧି ରାଜ୍ୟରେ ଗଢି ତୋଳିବାର ସ୍ୱପ୍ନ ଦେଖିଥିଲେ ସେ । ତାଙ୍କର ଅବିରତ ଉଦ୍ୟମ ଯୋଗୁଁ ପ୍ରତିଷ୍ଠା ହୋଇଥିଲା ରାଉରକେଲାର ଇସ୍ପାତ କାରଖାନା, ସୁନାବେଡାର ମିଗ୍ ବିମାନ କାରଖାନା, କଳିଙ୍ଗ ଟ୍ୟୁବ, କଳିଙ୍ଗ ଆଇରନ ଓାର୍କସ, ଓଡ଼ିଶା ଟେକ୍ସଟାଇଲ ମିଲସ୍, ଜାତୀୟ ତାପଜ ବିଦ୍ୟୁତ୍ କେନ୍ଦ୍ର ଓ ନାଲ୍କୋ । ସେହିପରି ସୈନିକ ସ୍କୁଲ, ଆଞ୍ଚଳିକ ଶିକ୍ଷା ପ୍ରତିଷ୍ଠାନ, କଳିଙ୍ଗ ଏୟାର ଲାଇନ୍ସ, ରାଉରକେଲା ଆଞ୍ଚଳିକ ଯାନ୍ତ୍ରିକ ମହାବିଦ୍ୟାଳୟ, ଭୁବନେଶ୍ୱର ପୂର୍ବତଟ ରେଳପଥର ମୁଖ୍ୟ ଦପ୍ତର ଥିଲା ତାଙ୍କର ଗୋଟିଏ ଗୋଟିଏ ସନ୍ତକ ।

୧୯୭୪ ମସିହାରେ ସେ ପାଟକୁରା ଆସନରୁ ଏକମାତ୍ର ବିଧାୟକ ରୂପେ ନିର୍ବାଚିତ ହୋଇ ବିରୋଧୀ ଦଳର ନେତା ରୂପେ କାର୍ଯ୍ୟ କରିଥିଲେ । ୧୯୭୫ ମସିହାରେ ସମଗ୍ର ଦେଶରେ ଆଭ୍ୟନ୍ତରୀଣ ଜରୁରୀ ପରିସ୍ଥିତି ଜାରି କରାଯାଇଥିଲା । କିନ୍ତୁ ବିଜୁବାବୁ ଏହାର ଘୋର ପ୍ରତିବାଦ କରିବାରୁ ସେହିବର୍ଷ ଜୁନ୍ ୨୩ ତାରିଖରେ ତାଙ୍କୁ ଗିରଫ କରାଯାଇଥିଲା । ୧୯୭୭ ମସିହାରେ ଲୋକସଭା ପାଇଁ ସାଧାରଣ ନିର୍ବାଚନ ଅନୁଷ୍ଠିତ ହେଲା । ସର୍ବଭାରତୀୟ ସ୍ତରରେ ଏକ ସଙ୍ଗଠିତ ବିରୋଧୀ ଦଳ ସୃଷ୍ଟି ପାଇଁ ତାଙ୍କର ପ୍ରୟାସ ଥିଲା ଉଲ୍ଲେଖନୀୟ । ଜନତା ପାର୍ଟି ଗଠନରେ ବିଜୁବାବୁ ଜୟପ୍ରକାଶଙ୍କୁ ପୂର୍ଣ୍ଣ ସହଯୋଗର ହାତ ବଢାଇ ଥିଲେ । ସେହି ନିର୍ବାଚନରେ ସେ କେନ୍ଦ୍ରାପଡା ଆସନରୁ କେବଳ ଏକମାତ୍ର ସାଂସଦ ଭାବରେ ନିର୍ବାଚିତ ହୋଇ କେନ୍ଦ୍ର ଇସ୍ପାତ ଓ ଖଣି ମନ୍ତ୍ରଣାଳୟର ଦାୟିତ୍ୱ ତୁଲାଇ ଥିଲେ । ୧୯୯୦ ଓ ୧୯୮୫ ନିର୍ବାଚନରେ ଜିତାପଟ ମାରି ସେ ନିଜ ଲୋକସଭା ଆସନକୁ ବଜାୟ ରଖିଲେ । ୧୯୯୦ ମସିହାରେ ତାଙ୍କ ବଳିଷ୍ଠ ନେତୃତ୍ୱ ଓ ବ୍ୟକ୍ତିତ୍ୱ ଯୋଗୁଁ ଜନତା ଦଳ ସର୍ବମୋଟ ୧୨୩ଟି ବିଧାନସଭା ଆସନ ଦଖଲ କରିଥିଲା ଓ ବିଜୁବାବୁ ପୁଣି ଥରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେବାର ସୌଭାଗ୍ୟ ଅର୍ଜନ କରିଥିଲେ । ଏହା ଥିଲା ତାଙ୍କ ନେତୃତ୍ୱ ପ୍ରତି ସାର୍ବଜନୀନ ଅକୁଣ୍ଠ ସ୍ୱୀକୃତି, ଦ୍ୱିତୀୟଥର ମୁଖ୍ୟମନ୍ତ୍ରୀ ଥିବା ସମୟରେ ବିଜୁବାବୁଙ୍କର ଅନେକଗୁଡିଏ କାର୍ଯ୍ୟ ଅତ୍ୟନ୍ତ ସମୟୋପଯୋଗୀ ଓ ଯୁକ୍ତିସଂଗତ ଥିଲା । ଦୁର୍ନୀତିଗ୍ରସ୍ତ ଭ୍ରଷ୍ଟାଚାରୀ କର୍ମଚାରୀଙ୍କ ବିରୁଦ୍ଧରେ ଦୁର୍ନୀତି ବିରୋଧୀ ଅଭିଯାନ, ପେଟ୍ରୋଲ ବଞ୍ଚାଇବା ପାଇଁ ସରକାରୀ ଗାଡି ଚଳାଚଳରେ ନିୟନ୍ତ୍ରଣ, କୃଷି ଶ୍ରମିକମାନଙ୍କର ସର୍ବନିମ୍ନ ମଜୁରୀ ହାର ବୃଦ୍ଧି ପ୍ରଭୃତି କାର୍ଯ୍ୟଗୁଡିକ ଆଣି ଦେଇଥିଲା ତାଙ୍କ ପାଇଁ ଖ୍ୟାତି ଓ ଲୋକପ୍ରିୟତା । ସେହିପରି ମଦ ଓ ଯୌତୁକ ପ୍ରଥା ବିରୁଦ୍ଧରେ ସେ କଠୋର ଆଇନର ବ୍ୟବସ୍ଥା କରିଥିଲେ । ''ମା'କୁ ସମ୍ମାନ ଓ ଗାଁକୁ କାମ''– ଏହା ଥିଲା ତାଙ୍କ ଶାସନ କାଳର ମୁଖ୍ୟ ସ୍ଲୋଗାନ, ବ୍ୟାପକ ଶିଳ୍ପାୟନ ଓ ବିଦ୍ୟୁତ ଉତ୍ପାଦନରେ ଓଡ଼ିଶାକୁ ଏକ ବଳକା ରାଜ୍ୟ ରୂପେ ଗଢି ତୋଳିବା ପାଇଁ ଏହି ସମୟରେ

ତାଙ୍କର ପ୍ରୟାସ ଅତ୍ୟନ୍ତ ସ୍ମରଣୀୟ । ପଞ୍ଚାୟତ ବ୍ୟବସ୍ଥାରେ ମହିଳାମାନଙ୍କ ପାଇଁ ସ୍ଥାନ ସଂରକ୍ଷଣ କରି ସେ ସାରା ଦେଶର ଚର୍ଚ୍ଚାର ପରିଧିକୁ ଟାଣି ହୋଇଯାଇଥିଲେ । ଦିନ ମଜୁରିଆ ବା ଖଟିଖିଆମାନଙ୍କ ସର୍ବନିମ୍ନ ମଜୁରୀ ୨୫ ଟଙ୍କାକୁ ବୃଦ୍ଧି କରି ଆନ୍ଦୋଳନ ଚିନ୍ତାଧାରାର ପରିଚୟ ଦେଇଥିଲେ । ପ୍ରତି ପଞ୍ଚାୟତରେ ଶିଳ୍ପ ପ୍ରତିଷ୍ଠା କରିବା ତାଙ୍କର ଥିଲା ସ୍ୱପ୍ନ ଓ ଗାଁମାନଙ୍କରେ ଅଗ୍ନି ନିରୋଧକ ଟାଇଲ ଘର ତାଙ୍କର ପରିକଳ୍ପନା । କାମରେ ସ୍ୱଚ୍ଛତା ଓ ତ୍ୱରାନ୍ୱିତର ବାତାବରଣ ସୃଷ୍ଟି ଥିଲା ତାଙ୍କର ମୂଳ ଲକ୍ଷ୍ୟ । ବିଜୁବାବୁଙ୍କ ଜୀବନ ହେଉଛି ଏକ ଖୋଲା ଇତିହାସ । ପ୍ରବଂଚନା, ମିଥ୍ୟା ଓ ଶଠତାରୁ ସେ ନିଜକୁ ଦୂରେଇ ରଖୁଥିଲେ । ବିଜୁବାବୁ ଥିଲେ ଧର୍ମନିରପେକ୍ଷତାର ଜଣେ ଦୃଢ ସମର୍ଥକ ଓ ଜାତିଆଣ ରାଜନୀତିର ଘୋର ବିରୋଧୀ । ଓଡ଼ିଶାର ସ୍ୱାଭିମାନକୁ ଦେଶ ବିଦେଶରେ ପ୍ରତିଷ୍ଠା କରିବା ପାଇଁ ୧୯୫୨ରେ ସେ କଳିଙ୍ଗ ପୁରସ୍କାର ଓ ୧୯୬୧ରେ କଳିଙ୍ଗ ଫୁଟବଲ ଟୁର୍ଣ୍ଣାମେଣ୍ଟର ପ୍ରଚଳନ କରିଥିଲେ । ବିଜୁବାବୁ ସାହସିକତା, ନିର୍ଭୀକତା ଓ ସ୍ପଷ୍ଟବାଦିତା ଓ ସମୟାନୁବର୍ତ୍ତୀତାର ଥିଲେ ଅନନ୍ୟ ପ୍ରତୀକ । ଓଡ଼ିଶାର ଯୁବ ସମାଜକୁ ଅତୀତର ଗୌରବମୟ ଇତିହାସରୁ ପ୍ରେରଣା ଲାଭ କରିବା ପାଇଁ ଆହ୍ୱାନ ଦେଇଥିଲେ । ଖାରବେଳ ଓ ନେପୋଲିୟନ ଥିଲେ ତାଙ୍କ ଜୀବନର ଆଦର୍ଶ । ଖାରବେଳ ଯୁଗର ହୃତ ଗୌରବ ଫେରାଇ ଆଣି ଏକ ସମୃଦ୍ଧ ଓଡ଼ିଶା ଗଠନ କରିବା ଥିଲା ତାଙ୍କର ଲକ୍ଷ୍ୟ । ଓଡ଼ିଶାର ସ୍ୱାଭିମାନ ବଜାୟ ରହୁ, ଓଡ଼ିଶାର ଲୋକ ବିଶ୍ୱ ଦରବାରରେ ବନ୍ଦିତ ହୁଅନ୍ତୁ, ପ୍ରତିଷ୍ଠା ଲାଭ କରନ୍ତୁ, ଓଡ଼ିଆ ଏକ ଭାଷା, ଜାତି ଓ ପ୍ରଦେଶ ବୋଲି ସମସ୍ତେ ଜାଣନ୍ତୁ– ଏହା ହିଁ ଥିଲା ତାଙ୍କର ସ୍ୱପ୍ନ, ଯେମିତି ମଧୁବାବୁଙ୍କ ଭଳି ।

୧୯୯୫ ମସିହା ନିର୍ବାଚନରେ ନିଜ ଦଳର ଶୋଚନୀୟ ବିପର୍ଯ୍ୟୟ ହେତୁ ବିଜୁବାବୁ ପୁଣି ବିରୋଧୀ ଦଳର ନେତା ରୂପେ ପ୍ରତ୍ୟାବର୍ତ୍ତନ କରିଥିଲେ । ୧୯୯୬ ମସିହା ନିର୍ବାଚନରେ ସେ କଟକ ଓ ଆସ୍କା ଦୁଇଟି ଆସନରୁ ସାଂସଦଭାବେ ନିର୍ବାଚିତ ହୋଇ ଜନତାଙ୍କ ସେବା କରିବାର ସୁଯୋଗ ହାତେଇ ଥିଲେ । ଅନ୍ତିମ ଜୀବନ ପର୍ଯ୍ୟନ୍ତ ସେ ଥିଲେ ଜଣେ ଅପ୍ରତିଦ୍ୱନ୍ଦ୍ୱୀ ରାଜନୈତିକ ବ୍ୟକ୍ତିତ୍ୱ ଓ ଓଡ଼ିଆତ୍ୱର ଏକ ପ୍ରଚଣ୍ଡ ଅଭିମାନ ।

ମହାକାଳର ଗତି ଅତି ବିଚିତ୍ର । ତାଙ୍କର ବହୁ ପ୍ରତୀକ୍ଷିତ ଆଶାର ଦୀପାଲୋକ ଅକାଳ ଝଞ୍ଜା ପବନରେ ନିର୍ବାପିତ ହୋଇଗଲା । ୮୧ ବର୍ଷ ବୟସରେ ୧୯୯୭ ମସିହା ଏପ୍ରିଲ ୧୭ ତାରିଖ ଦିନ ଏହି ମହାନ ଜନନାୟକ ଚିରଦିନ ପାଇଁ ଆଖି ବୁଜି ଦେଇଥିଲେ । ବିଜୁବାବୁ ଆଜି ନାହାନ୍ତି ସତ, କିନ୍ତୁ ତାଙ୍କ ସ୍ୱଦେଶ ପ୍ରେମର ନିଛକ ଚିତ୍ରର ଛାପ ଯୁଗ ଯୁଗ ପାଇଁ ଭାରତ ଇତିହାସରେ ଏକ ବିସ୍ମୟ ରୂପେ ସ୍ଥାନ ପାଇବ ।

ଅନୁଶାସନ ସଚିବ
ଶ୍ରମ ଓ ଇ.ଏସ୍.ଆଇ. ବିଭାଗ
ସଚିବାଳୟ, ଭୁବନେଶ୍ୱର



# କଳିଙ୍ଗ ଜନଗଣମନର ହୃଦୟ ସମ୍ରାଟ ବିଜୁ ପଟ୍ଟନାୟକ

ଡକ୍ଟର ବିନୋଦିନୀ ନାଥ

କଳିଙ୍ଗର ପ୍ରସିଦ୍ଧ ସମ୍ରାଟ୍ ଥିଲେ ଖାରବେଳ, ପୁନଶ୍ଚ ମୁକୁଟ ନଥାଇ ସେଇ ଦେଶର ସୁପ୍ରସିଦ୍ଧ ଜନଗଣଙ୍କ ହୃଦୟ ସମ୍ରାଟ ହେଲେ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ । ଦୁହେଁ ଏ ମାଟିର ଅବିସ୍ମରଣୀୟ ମହାନ୍ ବ୍ୟକ୍ତିତ୍ୱ । ତଫାତ୍ ଏତିକି ବିନା ମୁକୁଟର ସମ୍ରାଟ୍ ଜଣକ କେବଳ ଆମ କଳିଙ୍ଗରେ ନୁହଁନ୍ତି, ଆନ୍ତର୍ଜାତିକ ସ୍ତରରେ ମଧ୍ୟ ଅବିସ୍ମରଣୀୟ ଓ ଅନନ୍ୟ ବ୍ୟକ୍ତିତ୍ୱ । ତାଙ୍କର ବିକଳ୍ପ ନାହିଁ । କଳିଙ୍ଗକୁ ଦେଶ ବିଦେଶରେ ସାରା ଦୁନିଆରେ ଚିହ୍ନେଇଥିବା ବିଜୁବାବୁ ସଦା ଅମର, ଅଜେୟ ଏବଂ ଅଦ୍ୱିତୀୟ ।

୧୯୧୬ ମସିହା ମାର୍ଚ୍ଚ ୫ ତାରିଖରୁ ୧୯୯୭ ମସିହା ଏପ୍ରିଲ୍ ୧୭ ତାରିଖ ତାଙ୍କ ଜନ୍ମ ମୃତ୍ୟୁର ସ୍ଥିତିକାଳ । ଏଇ ୮୧ବର୍ଷ ମଧ୍ୟରେ ବିଜୁବାବୁଙ୍କର ଅମାପ ବ୍ୟକ୍ତିତ୍ୱର ପରିଧି ଏତେ ବ୍ୟାପକ ବିସ୍ତୃତ ଯେ ତା'ର ଆକଳନ କରିବା ନିହାତି କଷ୍ଟକର ବ୍ୟାପାର । ତାଙ୍କୁ ଜନ୍ମ ଦେଇ ତାଙ୍କର ପିତା, ମାତା ଉଭୟ ଧନ୍ୟ । ସମଗ୍ର କଳିଙ୍ଗବାସୀ ତାଙ୍କୁ ଏ ମାଟିର ପୁତ୍ରଭାବେ ପାଇ ଗର୍ବିତ ।

ଓଡ଼ିଶାର ପ୍ରାଚୀନ ନାମ କଳିଙ୍ଗ ପ୍ରତି ତାଙ୍କର ଅତି ଅହେତୁକ ଆକର୍ଷଣ ଏବଂ ଶ୍ରଦ୍ଧା । ସେ ଜଣେ କଳିଙ୍ଗର ବୀର କହିଲେ ଅତ୍ୟୁକ୍ତି ହେବନାହିଁ । ସେଥିପାଇଁ ସେ କଳିଙ୍ଗର ଯେତେ ଶିଳ୍ପୋଦ୍ୟୋଗ ଆରମ୍ଭ କରିଥିଲେ ଅଧିକାଂଶରେ ଆରମ୍ଭରୁ ହିଁ କଳିଙ୍ଗର ନାମ ଖଞ୍ଜିଥିଲେ । ଯଥା: କଳିଙ୍ଗ ଟ୍ୟୁବ୍ସ, କଳିଙ୍ଗ ଏୟାର ୱେଜ୍, କଳିଙ୍ଗ ଖବର କାଗଜ, ଜାତିସଂଘର ୟୁନେସ୍କୋ ଜରିଆରେ କଳିଙ୍ଗ ପୁରସ୍କାର, କଳିଙ୍ଗ ଫାଉଣ୍ଡେସନ୍ ଟ୍ରଷ୍ଟ, କଳିଙ୍ଗ ଆଇରନ୍ ୱାର୍କ୍ସ ଇତ୍ୟାଦି । ଏ ଦେଶର ସମସ୍ତ ଲୋକଙ୍କ ମନରେ, ପ୍ରାଣରେ ହୃଦୟରେ ଓ ଅନ୍ତରାତ୍ମାରେ ସେ କଳିଙ୍ଗ ସ୍ୱାଭିମାନର ଅଙ୍କୁର ରୋପଣ କରିଗଲେ ।

ଜନ୍ମମାଟି କଳିଙ୍ଗକୁ ସବୁଠୁ ଆଗରେ, ସବୁଠୁ ଉଚ୍ଚରେ ପହଞ୍ଚାଇବା ଥିଲା ତାଙ୍କର ପ୍ରଧାନ ଲକ୍ଷ୍ୟ, ସ୍ୱପ୍ନ ଏବଂ ଅଭିଳାଷ । ତେଣୁ ପ୍ରତିଟି କ୍ଷେତ୍ରରେ ଏ ମାଟିର ବିକାଶ ନିମିତ୍ତ ସେ ଆଜୀବନ ପ୍ରୟତ୍ନ କରିଥିଲେ । ସେଇ ପ୍ରୟତ୍ନର ସୁବିକଶିତ ସ୍ୱରୂପ ଭିତରେ ସୁନାବେଢାର ମିଗ୍ କାରଖାନା, ତାଳଚେର ଥର୍ମାଲ୍ ପ୍ଲାଣ୍ଟ, ପାରାଦୀପ ବନ୍ଦର, ବାଲିମେଳା ଜଳ ବିଦ୍ୟୁତ୍ ପ୍ରକଳ୍ପ, ରାଉରକେଲାର ଇଞ୍ଜିନିୟରିଂ କଲେଜ, ରିଜିଓନାଲ ରିସର୍ଚ୍ଚ ଲାବୋରୋଟୋରୀ, ଦୈତାରୀ ପାରାଦୀପ ଏକ୍ସପ୍ରେସ୍ ସଡକ, ପାରାଦୀପର ୨ୟ ଇସ୍ପାତ କାରଖାନା, ମହାନଦୀ ବ୍ୟାରେଜ୍, କେଉଁଝରର ସ୍ପଞ୍ଜ ଆଇରନ କାରଖାନା, କୁଆଁରିଆ ଯୋଜନା, ଇନ୍ଦ୍ରାବତୀ ଯୋଜନା, ସମଲ ବ୍ୟାରେଜର ଭିତ୍ତି ସ୍ଥାପନ ଇତ୍ୟାଦି ଅନେକ ଯୋଜନା ଅନ୍ତର୍ଭୁକ୍ତ ।

ଓଡ଼ିଶା ଏକ କୃଷି ପ୍ରଧାନ ଦେଶ ହେତୁ ସେ କୃଷି ଏବଂ କୃଷକକୁ ଅଶେଷ ମହତ୍ୱ ଦେଉଥିଲେ । ତାଙ୍କ ଭାଷାରେ 'ମୋ ସ୍ୱପ୍ନର ଓଡ଼ିଶାରେ କୌଣସି କୃଷକର କ୍ଷେତ ଶୁଷ୍କ ଶ୍ରୀହୀନ ରହିବ ନାହିଁ, ଆମ ମାଟିକୁ ସିକ୍ତ କରୁଥିବା ପ୍ରତ୍ୟେକ ଜଳବିନ୍ଦୁ ସବୁଜ ସମ୍ଭାରର ଉପହାର ଅଜାଡି ଦେଉ । ଜଳାଭାବରେ କୃଷିଜୀବୀମାନଙ୍କ କ୍ଷେତରୁ ଶସ୍ୟ ନଷ୍ଟ ନହେଉ । ପ୍ରତିଟି ଜଳବିନ୍ଦୁ ସଂରକ୍ଷିତ ହେଉ, ଉତ୍ପାଦନ ପାଇଁ ନିୟୋଜିତ ହେଉ ।'

ରାଜନୀତିରେ ସେ ସବୁଠାରୁ ଓସ୍ତାଦ୍ ଖେଳୁଆଡ । ତେଣୁ ସେ ବିଧାନସଭାକୁ ସମୁଦାୟ ୮ଥର, ଲୋକସଭାକୁ ସମୁଦାୟ ୪ଥର ଏବଂ ରାଜ୍ୟସଭାକୁ ଥରେ ନିର୍ବାଚିତ ହୋଇଥିଲେ । ଭାରତୀୟ ରାଜନୀତିରେ ତାଙ୍କ ଭଳି ରେକର୍ଡ କରିଥିବା ଅନ୍ୟ କୌଣସି ନେତା ଆଜିଯାଏ ନାହାଁନ୍ତି । ହାରିବା ଜିତିବା ନେଇ ସେ କେବେ ଉଲ୍ଲସିତ ଅବା ଧୈର୍ଯ୍ୟଚ୍ୟୁତ ହୋଇ ନାହାଁନ୍ତି ।

୧୯୬୧–୬୨ରେ ତାଙ୍କର ମୁଖ୍ୟମନ୍ତ୍ରୀତ୍ୱ କାଳରେ ସେ ଓଡ଼ିଶାରେ ତ୍ରିସ୍ତରୀୟ ରାଜନୀତି ପ୍ରଚଳନ କରିଥିଲେ । ଦ୍ୱିତୀୟବାର ମୁଖ୍ୟମନ୍ତ୍ରୀତ୍ୱ କାଳରେ ସେ ଓଡ଼ିଶାରେ ପଞ୍ଚାୟତ, ପୌର ପରିଷଦ ନିର୍ବାଚନ ପ୍ରଚଳନ କରାଇ ଥିଲେ । ଚାକିରି କ୍ଷେତ୍ରରେ ଏବଂ ନିର୍ବାଚନ ପ୍ରକ୍ରିୟାରେ ମହିଳାମାନଙ୍କ ପାଇଁ ସ୍ଥାନ ସଂରକ୍ଷଣ ବ୍ୟବସ୍ଥା ପ୍ରଚଳନ କରାଇ ଥିଲେ । ସବୁଠାରୁ ଉଲ୍ଲେଖଯୋଗ୍ୟ ଘଟଣା ଯେ ସେ ମୁଖ୍ୟମନ୍ତ୍ରୀ ହେବା ପରେ ପରେ ସର୍ବନିମ୍ନ ମଜୁରୀ ବଢାଇ ଥିଲେ । ବସ୍ତି ବିକାଶ ନିମନ୍ତେ ବହୁ ଯୋଜନା କାର୍ଯ୍ୟକାରୀ କରାଇ ଥିଲେ । ସମାଜର ପ୍ରତି ସ୍ତରର ବିକାଶ ତାଙ୍କର ଲକ୍ଷ୍ୟ ଥିଲା ।

ଯୁବ ଶକ୍ତିରେ ତାଙ୍କର ଅଶେଷ ଶ୍ରଦ୍ଧା ଏବଂ ଅଗାଧ ବିଶ୍ୱାସ ଥିଲା । ତେଣୁ ଏକ ସାକ୍ଷାତକାରରେ ସେ କହିଥିଲେ– ''ମୋ ଅଫିସରମାନେ ମୋ ପ୍ରତି କିମ୍ବା ମୋ ସରକାର ପ୍ରତି ଅନୁଗତ ହେବା ମୁଁ ଚାହେଁନା । ସେମାନେ ରାଜ୍ୟବାସୀଙ୍କ ପ୍ରତି ଅନୁଗତ ହେବା ମୁଁ ଚାହେଁ । ନୂଆ ଢାଞ୍ଚା ଓ ନୂଆ ପଦକ୍ଷେପ ଗ୍ରହଣ କରିବାକୁ ଆମେ ଯାଉଛେ । ତେଣୁ ମୋର ଅଫିସରମାନେ କେବଳ ପ୍ରଶାସକ ହେଲେ ଚଳିବ ନାହିଁ । ସେମାନଙ୍କୁ ଚିନ୍ତା କରିବାକୁ ହେବ ଫାଇଲ୍ ଉପରେ ପ୍ରଭାବ ବିସ୍ତାର ନକରି ଲୋକମାନଙ୍କ ସେବା କରି ସେମାନେ ପ୍ରଭାବ ବିସ୍ତାର କରନ୍ତୁ ।' ଲୋକ ସଂଗ୍ରହ ବା ସର୍ବଜନ କଲ୍ୟାଣ ହିଁ ତାଙ୍କର ବ୍ରତ ।

୧୯୪୨ରେ ଜୟ ପ୍ରକାଶ ନାରାୟଣ, ଅରୁଣା ଆସଫ ଅଲ୍ଲୀ ଏବଂ ଅଚ୍ୟୁତ ପଟ୍ଟବର୍ଦ୍ଧନଙ୍କ ସଂସ୍ପର୍ଶରେ ଆସି ସେ ସ୍ୱାଧୀନତା ସଂଗ୍ରାମରେ ଅଂଶ ଗ୍ରହଣ କରିଥିଲେ । ୧୯୪୩ରେ ସେ ପ୍ରଥମେ ଦିଲ୍ଲୀରେ ଏଥିପାଇଁ ଗିରଫ ହୋଇଥିଲେ। ୧୯୭୫ ଜୁନ୍ ୨୬ରେ ଦେଶରେ ଜରୁରୀ ପରିସ୍ଥିତି ଘୋଷଣା ପରେ ସେ 'ମିସା'ରେ ଗିରଫ ହୋଇଥିଲେ ।

ଇଣ୍ଡୋନେସିଆର ସର୍ବୋଚ୍ଚ ସମ୍ମାନ 'ଭୂମିପୁତ୍ର' ଉପାଧିରେ ବିଭୂଷିତ । କାରଣ ସେଦେଶର ରାଷ୍ଟ୍ରନେତାଙ୍କୁ ସେ ଗୁପ୍ତରେ ଅତି ସାହସର ସହିତ ବିମାନ ଯୋଗେ ଜାକର୍ତ୍ତାରୁ ଉଡାଇ ଆଣିଥିଲେ । ଇଣ୍ଡୋନେସିଆର ରାଷ୍ଟ୍ରପତି ସୁକର୍ଣ୍ଣ ତାଙ୍କ ସରକାରଙ୍କ ତରଫରୁ ଏକ ସମ୍ବର୍ଦ୍ଧନା ସଭାରେ ତାଙ୍କୁ ସେଦେଶର ୫୦୦ ବର୍ଗ ମାଇଲର ଅତି ମୂଲ୍ୟବାନ ଜଙ୍ଗଲ, ବିରାଟ ପ୍ରାସାଦ, ଏକ ତୈଳଖଣି ପାଇଁ ରିହାତି, ତାଙ୍କ ଦେଶରେ ଶିଳ୍ପ ପ୍ରତିଷ୍ଠା ପାଇଁ ସୁବିଧା ଇତ୍ୟାଦି ଉପହାର ସ୍ୱରୂପ ଦେଇଥିଲେ । ଏ ସବୁର ମୂଲ୍ୟ ୫ଶହ କୋଟି ଟଙ୍କାରୁ ଅଧିକ ମୂଲ୍ୟ ହେବ । କିନ୍ତୁ କଳିଙ୍ଗ ସମ୍ରାଟ ବିଜୁବାବୁ ସେସବୁକୁ ଫେରାଇ ଦେଇ ଅତି ଖୁସି ମିଜାଜରେ କହିଥିଲେ, 'କଳିଙ୍ଗର ରାଜା ଉପହାର ଗ୍ରହଣ କରେ ନାହିଁ ।' ଏହା ତାଙ୍କର ଉଦାରତା ଏବଂ ବିଭବ ପ୍ରତି ଅନାସକ୍ତ ଭାବର ଏକ ବଳିଷ୍ଠ ନିଦର୍ଶନ ।

ବିଜୁବାବୁଙ୍କର ପ୍ରତିଭା ବହୁମୁଖୀ । ତାର କଳନା ପାଇଁ ସମୟ ନିଅଣ୍ଟ ହେବ । ତାଙ୍କ ଭଳି ନିର୍ଭୀକ, ସ୍ପଷ୍ଟବାଦୀ ଏବଂ ସାହସୀ, ସ୍ୱାଭିମାନୀ ନେତା ବିରଳ । ଯୁବକ ସମୟରେ ଦୁଇଜଣ ଘନିଷ୍ଠ ବନ୍ଧୁଙ୍କ ସହ କଟକରୁ ପେଶୱାର ପର୍ଯ୍ୟନ୍ତ ସୁଦୀର୍ଘ ୪୦୦୦ କିଲୋମିଟର ସାଇକେଲରେ ସେ ଭ୍ରମଣ କରିଥିଲେ । ଓଡ଼ିଶାରେ ସେ ସର୍ବପ୍ରଥମେ ପୋଲଭୋଲ୍ଟ ଖେଳ ଆରମ୍ଭ କରିଥିଲେ । ଫୁଟବଲ୍ ଖେଳରେ ଲଗାତାର ୩ବର୍ଷ ଧରି ସେ ଆଥ୍ଲେଟିକ ଚମ୍ପିଅନ୍ ହୋଇଥିଲେ । ଜଣେ ଆଗ ଧାଡିର ଦୁର୍ଦ୍ଧର୍ଷ ପାଇଲଟ୍ ସେ । ଅନ୍ୟମାନେ ଯାହାକୁ ଦୁଃସାଧ୍ୟ କହି ଥାଆନ୍ତି, ସେ ସେଥିରେ ସଫଳ ହୋଇଛନ୍ତି । ତେଣୁ ଦେଶ ବିଦେଶର ସମସ୍ତ ନେତାଙ୍କର ସେ ପ୍ରିୟପାତ୍ର ଏବଂ ବିଶ୍ୱାସପାତ୍ର ଥିଲେ । ସମସ୍ତ କ୍ଷେତ୍ରରେ ତାଙ୍କର ଉଦ୍ୟୋଗ ଉଲ୍ଲେଖନୀୟ । ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ଅଥବା ନିର୍ଦ୍ଦିଷ୍ଟ କାର୍ଯ୍ୟରେ ସେ କୌଣସି କାଳରେ ସୀମାବଦ୍ଧ ନୁହଁନ୍ତି । ତେଣୁ ତାଙ୍କର ନିର୍ଭୀକ ଉକ୍ତି ଥିଲା– 'ସାରା ଓଡ଼ିଶା ମୋର, ଏ ଓଡ଼ିଶାର ନଦନଦୀ, ପାହାଡ ପର୍ବତ, କଳ କାରଖାନା, ଖଣି ଖାଦାନ୍ ଏସବୁ ମୋର ।'

ବାସ୍ତବରେ ବିଜୁବାବୁ ଅଦ୍ୱିତୀୟ ଅନନ୍ୟ ଭୂମିପୁତ୍ର । ତାଙ୍କର ସମଗ୍ର ଚରିତ୍ରବତ୍ତାକୁ ଆକଳନ କରି ଜେନ୍ ହକ୍ସଲେ କହିଥିଲେ, ଏ ହେଉଛନ୍ତି ସେହି ଭାରତୀୟ ଯାହାଙ୍କର କାର୍ଯ୍ୟାବଳୀ ଲିପିବଦ୍ଧ କରି ବସିଲେ ଗ୍ରନ୍ଥଟିଏ ହୋଇଯିବ । ତାଙ୍କର ବକ୍ତବ୍ୟ ଶତ ପ୍ରତିଶତ ସଠିକ୍ । କାରଣ ଏଭଳି ଉତ୍ତୁଙ୍ଗ ବିଶାଳ ବ୍ୟାପକ ବ୍ୟକ୍ତିତ୍ୱର ପ୍ରତ୍ୟେକ ବିଭାବକୁ ଅନୁଶୀଳନ କରି ରୂପ ଦେବା ବା ବର୍ଣ୍ଣନା କରିବା ଏକ ଅସମ୍ଭବ ଅସହଜ ବ୍ୟାପାର । ତାଙ୍କ ପରେ ତାଙ୍କ ଭଳି ଆଉ ଏକ ଦ୍ୱିତୀୟ ବ୍ୟକ୍ତି ତାଙ୍କ ସମକକ୍ଷ ହୋଇପାରି ନାହାଁନ୍ତି । ପ୍ରତିଟି କ୍ଷେତ୍ରରେ ତାଙ୍କର ରେକର୍ଡ ଭାଙ୍ଗିବା ଦୂରର କଥା ତାଙ୍କ ପାଖାପାଖି ହେବା ଭଳି ବ୍ୟକ୍ତିତ୍ୱ ଆଜିଯାଏ ଏ ମାଟିରେ ଦୁର୍ଲଭ । ତେଣୁ ନିସନ୍ଦେହରେ ଏତିକି ମାତ୍ର କୁହାଯାଇପାରେ ଯେ ସେ ବାସ୍ତବିକ୍ ଭୂମିପୁତ୍ର, ଆମ କଳିଙ୍ଗର ମୁକୁଟ ବିହୀନ ଶେଷ ସମ୍ରାଟ୍ ।

ପ୍ରାଧ୍ୟାପିକା
ଏକାମ୍ର କଲେଜ, ଭୁବନେଶ୍ୱର

# ଜନନେତା ବିଜୁବାବୁ - ଏକ ବ୍ୟତିକ୍ରମ

**ଆଦିତ୍ୟ ନାରାୟଣ ମିଶ୍ର**

ଯଦି 'ବିଜୁ' ନାଁ କିଏ କହିଲା, ସମସ୍ତଙ୍କର ଦୃଷ୍ଟି ପତିତ ହୁଏ ବିଜୁ ପଟ୍ଟନାୟକଙ୍କ ଉପରେ । ଏହି ନାଁ ଉଚ୍ଚାରଣ ହେଲେ ସମସ୍ତଙ୍କ ମନ ପ୍ରାଣ ପୁଲକିତ ହୋଇଯାଏ । ହୃଦୟରେ ଆସେ ଅପୂର୍ବ ଶିହରଣ । ପ୍ରତ୍ୟେକ ଓଡିଆ ତ ବିଜୁବାବୁଙ୍କ ପାଇଁ ଗର୍ବିତ। ଦେଶ ବିଦେଶରେ ଓଡିଶାର ସ୍ୱତନ୍ତ୍ର ପରିଚୟ ଅଛି ଗୋଟିଏ ଜଗତର ନାଥ ଜଗନ୍ନାଥଙ୍କ ପାଇଁ, ଆଉ ଅନ୍ୟଟି ହେଉଛି ଓଡିଶାର ବିଜୁ ପଟ୍ଟନାୟକ । ଆମ ଓଡିଶାରେ ଯେତେ ଲୋକ ସାମାଜିକ ଜୀବନରୁ ଆସି ରାଜନୈତିକ ନେତୃତ୍ୱ ନେଇଛନ୍ତି, ସେମାନେ ଅଧିକ ସମର୍ଥକ ସୃଷ୍ଟି କରିପାରି ନାହାନ୍ତି। ଗାଣିତିକ ହାରରେ କ୍ଷମତାଶାଳୀ ହୋଇଛନ୍ତି। କିନ୍ତୁ ବିଜୁବାବୁ ଓଡିଶାର ପ୍ରାୟ ପ୍ରତ୍ୟେକ ପରିବାରରେ ପୂଜିତ । ସମଗ୍ର ଓଡିଶା ଆଜି ବିଜୁ ପରିବାର । ଏହି ଉତ୍ତୁଙ୍ଗ ବ୍ୟକ୍ତିତ୍ୱ ଥିଲେ ବୀର ଓଡିଆ ଜାତିର ଏକ ଅପ୍ରତିମ ପ୍ରତୀକ । କଳିଙ୍ଗର ଶେଷ ସମ୍ରାଟ । ନିଜର ବ୍ୟକ୍ତିଗତ ଜୀବନକୁ ବିପଦଗ୍ରସ୍ତ କରି ଦେଶ ଓ ଜାତିର ଟେକ ରଖିବା ପାଇଁ ସେ ବହୁ କାର୍ଯ୍ୟ କରିଛନ୍ତି । ୧୯୧୬ ମସିହା ମାର୍ଚ୍ଚ ୫ ତାରିଖରେ ସେ ଜନ୍ମ ନେଇଥିଲେ କଟକ ସହରର ଆନନ୍ଦ ଭବନରେ । ପିତା ଥିଲେ ଉପଜିଲ୍ଲାନ୍ୟାୟାଧିଶ ଲକ୍ଷ୍ମୀନାରାୟଣ ପଟ୍ଟନାୟକ, ମାତା ଥିଲେ ଆଶା ଦେବୀ । ବିଜୁଙ୍କୁ ଯେତେବେଳେ ୧୦ ବର୍ଷ ସେତେବେଳେ ସ୍ୱରାଜ ଆଶ୍ରମଠାରେ ମହାତ୍ମା ଗାନ୍ଧୀଙ୍କୁ ଦେଖିବାକୁ ଯାଇ ସେ ଗୋରା ପୋଲିସଙ୍କ ଦ୍ୱାରା ଲାଠି ମାଡ ଖାଇଥିଲେ। ପ୍ରଥମେ ଖ୍ରୀଏଷ୍ଟ ଓ ପରେ ରେଭେନ୍ସା କଲିଜିଏଟ ସ୍କୁଲରେ ଶିକ୍ଷା ସମାପ୍ତ ପରେ ସେ ଉଚ୍ଚ ଶିକ୍ଷା ପାଇଁ ରେଭେନ୍ସା କଲେଜରେ ଭର୍ତ୍ତି ହେଲେ। ସୁସ୍ଥ, ସବଳ, ସୁଦୀର୍ଘ ଓ ସୁଠାମ ଠାଣିରେ ଏହି ଯୁବକ ଥିଲେ ପ୍ରଚଣ୍ଡ ସାହସୀ । କଲେଜରେ ସ୍ପୋର୍ଟସ ଚାଂପିୟାନ। ରେଭେନ୍ସାରେ ଆଇ.ଏସସି. ପଢୁଥିବା ବେଳେ କଟକରୁ ପେଶୱାର ପର୍ଯ୍ୟନ୍ତ ଦୀର୍ଘ ୪୪୦୦ କିଲୋମିଟର ସାଇକେଲରେ ସେ ଯାତ୍ରା କରିଥିଲେ। ପିଲାଦିନୁ ତାଙ୍କର ଥିଲା ଆକାଶରେ ଉଡିବାର ନିଶା । ବି.ଏସସି. ଅଧାରୁ ପାଇଲଟ ଟ୍ରେନିଂ ଯାଇ ୧୯୩୭ ମସିହାରେ ବୈମାନିକ ରୂପେ ନିଯୁକ୍ତି ପାଇଲେ। ତା'ର ଠିକ୍ ବର୍ଷକ ପରେ ତାଙ୍କର ଜ୍ଞାନ ଦେବୀଙ୍କ ସହ ବିବାହ ହୋଇଥିଲା । ଇଂରେଜ ସରକାର ଅଧୀନରେ ଚାକିରି କରୁଥିଲେ ମଧ୍ୟ ତାଙ୍କର ମନ ଥିଲା ସ୍ୱାଧୀନତା ସଂଗ୍ରାମରେ। ଭାରତୀୟ ସ୍ୱାଧୀନତା ସଂଗ୍ରାମୀମାନଙ୍କ ସହ ତାଙ୍କର ଯୋଗସୂତ୍ର ଥିଲା ନିବିଡ। ୧୯୪୨ ମସିହା ଭାରତଛାଡ ଆନ୍ଦୋଳନରେ ମହାତ୍ମା ଗାନ୍ଧୀ, ନେହେରୁ, ବଲ୍ଲଭ ଭାଇ ପଟେଲ, ରାଜେନ୍ଦ୍ର ପ୍ରସାଦ, ଡକ୍ଟର ମହତାବ ପ୍ରମୁଖ କଂଗ୍ରେସ ନେତାମାନଙ୍କୁ ବ୍ରିଟିଶ ସରକାର ଜେଲରେ ଭର୍ତ୍ତି କରିଥିଲା । ଆଉ ଯେଉଁମାନେ ଏହି ସଂଗ୍ରାମରେ ଅଣ୍ଡରଗ୍ରାଉଣ୍ଡ କାମ କରୁଥିଲେ ଯଥା ଜୟ ପ୍ରକାଶ, ରାମମନୋହର ଲୋହିଆ, ଅରୁଣା ଆସଫ ଅଲ୍ଲୀ, ସେମାନଙ୍କୁ ସହଯୋଗ କରୁଥିଲେ ୨୬ ବର୍ଷର ଯୁବକ ବିଜୁ । ଏହି ନେତାମାନଙ୍କୁ ବିମାନରେ ବିଭିନ୍ନ ସ୍ଥାନକୁ ନେଇ ଆନ୍ଦୋଳନକୁ ସକ୍ରିୟ କରାଉ ଥିଲେ। ପ୍ରଥମରୁ ବ୍ରିଟିଶ ଗୁଇନ୍ଦା ଏହାର ସୁରାକ ପାଇ ନଥିଲେ। ଭାରତୀୟ ସଂଗ୍ରାମୀମାନଙ୍କୁ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ଯୋଗାଉଥିବା ଅଭିଯୋଗରେ ୧୯୪୩ ମସିହା ଜାନୁଆରୀ ୧୩ ତାରିଖରେ ତାଙ୍କୁ ଦିଲ୍ଲୀରେ ଗିରଫ କରାଗଲା। ଏହା ପୂର୍ବରୁ ୧୯୪୧ ମସିହାରେ ତାଙ୍କ ପିତା ଓ ୧୯୪୨ରେ ତାଙ୍କ ମାତା ଇହଧାମ ତ୍ୟାଗ କରି ସାରିଥିଲେ। ଦେଶଦ୍ରୋହର ସଂଗୀନ ଅଭିଯୋଗରେ ତାଙ୍କୁ ଗୁରୁତର ଦଣ୍ଡ ଏପରିକି ଫାଶୀ ପର୍ଯ୍ୟନ୍ତ କଥା ଯିବାବେଳକୁ ସ୍ୱାଧୀନତାର ଝଲକ ଦେଖିବାକୁ ପାଇଥିଲା ଭାରତବର୍ଷ । ପରେ ୧୯୪୫ ମସିହାରେ ସେ ପାରୋଲରେ ଜେଲରୁ ଖଲାସ ହୋଇଥିଲେ।

ଓଡିଶାରେ ବିରାଟ ଶିଳ୍ପ ଗଢିବାର ସ୍ୱପ୍ନ ଦେଖିଥିଲେ ବିଜୁବାବୁ। ତାଙ୍କର ବି.ପଟ୍ଟନାୟକ ଆଣ୍ଡ୍ କଂପାନୀ ୧୯୪୪ ମସିହାରେ ରେଜିଷ୍ଟ୍ରିଭୁକ୍ତ ହୋଇଥିଲା । ଏହା ଅଧୀନରେ କଳିଙ୍ଗ ଟିଉବ୍ସ , ଓଟିଏମ, ରେଫ୍ରିଜେରେଟର କାରଖାନା, ବଡବିଲରେ

କଳିଙ୍ଗ ଆଇରନ ୱାର୍କସ ପ୍ରଭୃତି ପ୍ରତିଷ୍ଠା କରାଯାଇଥିଲା । ଜଣେ ପ୍ରତିଷ୍ଠିତ ଶିଳ୍ପପତି ବନିଯାଇଥିଲେ ବିଜୁବାବୁ । ଖାଲି ଓଡିଶା ନୁହେଁ, ଜାତୀୟ ରାଜନୀତିରେ ତାଙ୍କ ଭୂମିକା ଥିଲା ପ୍ରଭାବଶାଳୀ । ୧୯୬୪ ମସିହାରେ ସେ ଓଡିଶା ବ୍ୟବସ୍ଥାପକ ସଭାର ସଭ୍ୟ ରୂପେ ନିର୍ବାଚିତ ହେଲେ। ଏହା ପରବର୍ଷ କଟକ ସହରର ବିଧାୟକ ହୋଇଥିଲେ। ୧୯୫୨ରେ ଜଗନ୍ନାଥ ପ୍ରସାଦ, ୧୯୫୭ରେ ସୋରଡା, ୧୯୬୧ରେ ଚୌଦ୍ୱାର, ୧୯୭୧ ଉପନିର୍ବାଚନରେ ଓ ୧୯୭୪ରେ ରାଜନଗର, ୧୯୮୫ ଓ ୧୯୯୦–୧୯୯୫ରେ ଭୁବନେଶ୍ୱର ବିଧାନସଭା ଆସନରୁ ସେ ପ୍ରତିନିଧିତ୍ୱ କରିଥିଲେ। ୧୯୬୧ ଓ ୧୯୯୦ ମସିହାରେ ୨ଥର ମୁଖମନ୍ତ୍ରୀ ହୋଇଥିଲେ। ୧୯୭୧– ୧୯୭୨ ମସିହାରେ ସେ ବର୍ଷକ ପାଇଁ ରାଜ୍ୟସଭା ଓ ୧୯୭୭, ୧୯୮୦, ୧୯୮୪,୧୯୯୬ରେ ୪ଥର ଲୋକସଭା ସଦସ୍ୟ ହୋଇଥିଲେ। ବିଜୁବାବୁ ମୋରାରଜୀ ଦେଶାଇ ଓ ଚରଣ ସିଂହଙ୍କ ମନ୍ତ୍ରିମଣ୍ଡଳରେ ଖଣି ଓ ଇସ୍ପାତ ମନ୍ତ୍ରୀ ଦାୟିତ୍ୱ ନେଇଥିଲେ। ମାତ୍ର ୪୫ ବର୍ଷ ବୟସରେ ୧୯୬୧ ମସିହାରେ ସେ ହୋଇଥିଲେ ପିସିସିର ସଭାପତି । ୧୯୬୯ ମସିହାରେ ବିଜୁଙ୍କ ଦ୍ୱାରା ରାଜ୍ୟରେ ଉତ୍କଳ କଂଗ୍ରେସ ନାମରେ ଏକ ଆଞ୍ଚଳିକ ଦଳ ଗଠିତ ହୋଇଥିଲା, ଯାହାର ସୁଦୂର ପ୍ରସାରୀ ପ୍ରଭାବ ଥିଲା । ସେହି ଅନୁସାରେ ଆଞ୍ଚଳିକ ଦଳର ପ୍ରଭାବ ଏବେ ବି ଆମ ରାଜ୍ୟରେ ରହିଛି। ମୁଖମନ୍ତ୍ରିତ୍ୱ ସମୟରେ କୋରାପୁଟରେ ମିଗ୍ କାରଖାନା, ଯାଜପୁର ରୋଡରେ ଫେରୋକ୍ରମ, ପାରାଦୀପ ବନ୍ଦର, ଓୟୁଏଟି, ସୈନିକ ସ୍କୁଲ, ରିଜିଓନାଲ କଲେଜ, ରାଉରକେଲା ଯାନ୍ତ୍ରିକ କଲେଜ ପ୍ରତିଷ୍ଠା ହିଁ ତାଙ୍କର ପ୍ରମୁଖ ଅବଦାନ।

୧୯୭୫ର ଜରୁରିକାଳୀନ ପରିସ୍ଥିତି ଘୋଷଣା ପରେ ତାଙ୍କୁ ଦିଲ୍ଲୀଠାରେ ଗିରଫ କରାଯାଇଥିଲା। ବିଜୁଙ୍କ ସାହସିକ ଭୂମିକା ସମଗ୍ର ବିଶ୍ୱବାସୀଙ୍କୁ ଚକିତ କରିଥିଲା । ଇଣ୍ଡୋନେସିଆ ମୁକ୍ତି ଆନ୍ଦୋଳନର ତୁଙ୍ଗ ନେତା ରାଷ୍ଟ୍ରପତି ସୁକର୍ଣ୍ଣ ଓ ପ୍ରଧାନମନ୍ତ୍ରୀ ସାହାରିରଙ୍କୁ ଡଚ୍ ସରକାରଙ୍କ କବଳରୁ ରକ୍ଷା କରିଥିଲେ ବିଜୁବାବୁ। ନେହେରୁଙ୍କ ପରାମର୍ଶକ୍ରମେ ହଜାର ହଜାର ଡଚ୍ ସୈନିକଙ୍କ ଆଖି ଆଗରୁ ସେ ନିଜ ଡାକୋଟା ବିମାନରେ ଏମାନଙ୍କୁ ଦିଲ୍ଲୀ ନେଇ ଆସିଥିଲେ। ଏଥିପାଇଁ ତାଙ୍କୁ ଇଣ୍ଡୋନେସିଆରେ 'ଭୂମିପୁତ୍ର' ଉପାଧିରେ ସମ୍ମାନିତ କରାଯାଇଥିଲା। ୧୯୫୧ ମସିହାରେ ବିଜ୍ଞାନରେ ଉତ୍କର୍ଷତା ପାଇଁ ସେ ଜାତିସଂଘ ଜରିଆରେ ପ୍ରତିଷ୍ଠା କରିଥିଲେ କଳିଙ୍ଗ ପୁରସ୍କାର ଏବଂ କଳିଙ୍ଗ ଟ୍ରଷ୍ଟ ପକ୍ଷରୁ ୧୯୬୦ ମସିହା ଅକ୍ଟୋବର ୨ ତାରିଖ ଦିନ ତାଙ୍କ ଦ୍ୱାରା ପ୍ରକାଶ ପାଇଥିଲା ଦୈନିକ ସଂବାଦପତ୍ର 'କଳିଙ୍ଗ'। ବିଜୁବାବୁ ଭାରତ ଓ ଚୀନ୍ ଯୁଦ୍ଧ ବେଳେ ପ୍ରଧାନମନ୍ତ୍ରୀଙ୍କ ସ୍ୱତନ୍ତ୍ର ଯୁଦ୍ଧ ପରାମର୍ଶଦାତା ଭାବେ ନିଯୁକ୍ତି ପାଇଥିଲେ । ଘଟଣା ବହୁଳ ଏହି ମହାନ ପ୍ରତିଭାଧରଙ୍କ ଜୀବନ ପ୍ରଦୀପ ନିର୍ବାଚିତ ହୋଇଥିଲା ୧୯୯୭ ମସିହା ଏପ୍ରିଲ ୧୭ ତାରିଖ ସକାଳ ୮ଟା ୧୫ ମିନିଟରେ ଦିଲ୍ଲୀଠାରେ। ଆଧୁନିକ ଓଡିଶାର ଖାରବେଳ, କଳିଙ୍ଗର ଶେଷ ସମ୍ରାଟ, ଜାତୀୟ ପୁନର୍ଗଠନର ମହାନାୟକ, ଦୁର୍ଦ୍ଧର୍ଷ ବିପ୍ଳବୀ ଦେଶର ଏହି ମହାନ ପୁତ୍ରଙ୍କ ଚିତା ଜଳି ଉଠିଲା ପୁରୀ ସ୍ୱର୍ଗଦ୍ୱାରରେ । ଭାରତବର୍ଷ ଏପରିକି ବିଶ୍ୱର ନେତୃମଣ୍ଡଳୀ ତାଙ୍କ ଅନ୍ତେଷ୍ଟିକ୍ରିୟାରେ ଯୋଗ ଦେଇଥିଲେ । ସମଗ୍ର ଓଡିଶା ସ୍ତମ୍ଭୀଭୂତ ହୋଇ ଯାଇଥିଲା । ଭୁବନେଶ୍ୱରରୁ ପୁରୀ ପର୍ଯ୍ୟନ୍ତ ଯାଇଥିବା ତାଙ୍କ ଶବ ଶୋଭାଯାତ୍ରା ମହନୀୟତାକୁ ପ୍ରକଟିତ କରୁଥିଲା । ସେଦିନ ଏହା ପ୍ରମାଣିତ କରିଥିଲା ସମଗ୍ର ଓଡିଶା ଯେପରି ବିଜୁ ପରିବାର । ସତେଯେମିତି ପରିବାରରୁ ଜଣେ କିଏ ଆତ୍ମୀୟ ବ୍ୟକ୍ତି ମରିଯାଇଛନ୍ତି ।

ବିଜୁବାବୁ ଥିଲେ ପ୍ରେରଣାର ଉତ୍ସ । ସଂକୀର୍ଣ୍ଣ ରାଜନୀତିରୁ ବହୁ ଊର୍ଦ୍ଧ୍ୱରେ ସେ । ଭାରତୀୟ ରାଜନୀତିର ଏହି ଭୀଷ୍ମ ପିତାମହ ଦେଶର ଆବଶ୍ୟକତା ବେଳେ ରାଜନୀତିରୁ ଊର୍ଦ୍ଧ୍ୱକୁ ଯାଇ ବାସ୍ତବ ତଥା ଯଥାର୍ଥ କଥା କହୁଥିଲେ ଓ ତାହାକୁ କାର୍ଯ୍ୟରେ ପ୍ରତିପାଦିତ କରାଉଥିଲେ। ଯୁଗପୁରୁଷଙ୍କ ଭଳି ତାଙ୍କ ପ୍ରାଧାନ୍ୟ ଥିଲା ବେଶ ବିସ୍ତାରିତ । ଗଣତାନ୍ତ୍ରିକ ଅଧିକାର ପାଇଁ ତାଙ୍କର ଅବଦାନ ଖୁବ ପ୍ରଭାବିତ ଥିଲା। ଏହି ଜନମାନସର ପ୍ରବକ୍ତା ଥିଲେ ସ୍ୱାଭିମାନର ପ୍ରତୀକ । ଚିର ସବୁଜ । ଅକୃତ୍ରିମ ଯୋଦ୍ଧା । ଯେଉଁ ସମୟରେ ଦେଶରେ ଆଦର୍ଶବାଦୀ ନେତାଙ୍କର ଅଭାବ ନଥିଲା, ସେସମୟରେ ନିଜର ନିର୍ଭୀକ ଓ ସମ୍ବେଦନଶୀଳ ପ୍ରକୃତି ଓ କାର୍ଯ୍ୟ ଯୋଗୁଁ ସେ ନେହେରୁ, ଜୟପ୍ରକାଶ ଓ ବହୁ ବିଶିଷ୍ଟ ଦେଶପ୍ରେମୀ ଓ ଜାତୀୟବାଦୀ ନେତାଙ୍କର ପ୍ରିୟପାତ୍ର ହୋଇଥିଲେ। ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ମହନୀୟ ପରଂପରାର ସେ ଥିଲେ ବାସ୍ତବ ପ୍ରତିନିଧି। ଭାରତଛାଡ ଆନ୍ଦୋଳନର ସେ ଥିଲେ ଶେଷ ସାରଥି। ସେ ବୁଝି ଥିଲେ ବିପ୍ଳବ କର୍ମ ପ୍ରେରଣାର ସ୍ରୋତ। କାହାର ଅନୁଗାମୀ ନହୋଇ ସେ ଥିଲେ ବିପୁଳ କ୍ଷମତା ଓ ଶକ୍ତିର ଅଧିକାରୀ । ଥିଲେ ସେ ସକ୍ଷମ ରାଜନେତା, ସବଳ ସଂଗଠକ ଓ ସଫଳ ପ୍ରଶାସକ। ବିଜୁବାବୁ ହେଉଛନ୍ତି ଝଡର ଇଗଲ ଓ ମାଟିର ମୂର୍ତ୍ତିକାର । ବିଜୁଙ୍କ ଶରୀର ସିନା ବିଲୀନ ହୋଇଯାଇଛି ମାତ୍ର ତାଙ୍କର ଆତ୍ମା ଆଜି ଜୀବନ୍ତ ସମଗ୍ର ଦେଶର କୋଣ ଅନୁକୋଣରେ । ଓଡିଆ ପ୍ରାଣରେ ଉଙ୍କି ମାରୁଥିବେ ବିଜୁ ଯୁଗ ଯୁଗ ପାଇଁ। ଜାତି ପ୍ରାଣତାରେ ଭରପୂର ଏହି ନିର୍ଣ୍ଣାୟକ ନାୟକଙ୍କୁ ଆଜି ଦିଲ୍ଲୀ ଦରବାରରେ ଦେଶ ଖୋଜୁଛି। ବାସ୍ତବିକ ଏହା ଆମ ଓଡିଆ ଜାତି ପାଇଁ ଏକ ଗୌରବମୟ ବିଷୟ।

ହରିହର ନିଳୟ, ରାଣୀଭବନ ଲେନ୍
ଦଉଡୋଟା, ପୁରୀ–୭୫୨୦୦୧

# ବିଂଶ ଶତାବ୍ଦୀର ମହାନ୍ କର୍ମଯୋଗୀ ବିଜୁ ପଟ୍ଟନାୟକ

**ଯୁଗଳ କିଶୋର ହୋତା**

ସେଦିନ ଥିଲା ୧୯୯୭ ମସିହା ଏପ୍ରିଲ ୧୭ ତାରିଖ । ମୁଁ ଏବଂ ଆମ କଲେଜର ଅଧ୍ୟକ୍ଷ ସେକ୍ ସୌକତ ଅଲ୍ଲୀଙ୍କ ସହ କଲେଜ କାମରେ ଭୁବନେଶ୍ୱର ଯାଇଥିଲୁ । ବାଣୀବିହାର ପରିସର ମଧ୍ୟରେ ଥିବା ଷ୍ଟେଟ୍‌ବ୍ୟାଙ୍କ ଭିତରକୁ କିଛି ଜରୁରୀ କାମ ପାଇଁ ପ୍ରବେଶ କଲୁ । ବ୍ୟାଙ୍କ୍ ଭିତର ଦୃଶ୍ୟ ଦେଖି ଆଶ୍ଚର୍ଯ୍ୟ ଲାଗିଲା । ଦଳ ଦଳ ହୋଇ କର୍ମଚାରୀ ଓ ଗ୍ରାହକମାନେ ବାହାରକୁ ଆସୁଥାନ୍ତି। ଏହା ଦେଖି ମୁଁ ଜଣେ ଭଦ୍ରବ୍ୟକ୍ତିଙ୍କୁ ପ୍ରଶ୍ନ କଲି, ଆଜି କ'ଣ ବ୍ୟାଙ୍କ ବନ୍ଦ, ସମସ୍ତେ କାହିଁକି ବାହାରକୁ ଚାଲି ଆସୁଛନ୍ତି ? ସେ ଭଦ୍ରବ୍ୟକ୍ତି ଯାହା ଉତ୍ତର ଦେଲେ, ତାହା ଆମକୁ ସ୍ତବ୍ଧ କରିଦେଲା । ତାଙ୍କର ଭାଷାଥିଲା 'ଆମ ଓଡ଼ିଶାର ମୁରବୀ ଚାଲି ଗଲେ' । ମନଟା ମୋର ବୁଝିଲା ନାହିଁ । ମୁଁ ଅଧ୍ୟକ୍ଷଙ୍କୁ ପଚାରିଲି, 'ସାର୍ ସତରେ କ'ଣ ଆମ ଓଡ଼ିଶାର ବରପୁତ୍ର ଏତେଶୀଘ୍ର ଓଡ଼ିଶାକୁ ଛେଉଣ୍ଡ କରି ଚାଲିଗଲେ' । ସେ ଦୁଃଖରେ ମ୍ରିୟମାଣ ହୋଇ କହିଲେ, 'କଥାଟା ବିଶ୍ୱାସ ହେଉ ନଥିଲେ ମଧ୍ୟ ସତ୍ୟ । କାରଣ, ଦେଖୁନାହାନ୍ତି ବିଶ୍ୱ ବିଦ୍ୟାଳୟ, ଅଫିସ୍ ବନ୍ଦ ହୋଇଗଲାଣି, ସବୁଠି ଲୋକ ଦଳ ଦଳ ହୋଇ ଆଲୋଚନା କରୁଛନ୍ତି ।' ମୋ ଆଖିକୁ ଲୁହ ଆସିଗଲା । କୋହ ସମ୍ଭାଳି ନପାରି କାନ୍ଦି ପକାଇଲି । କାରଣ ସେ ଥିଲେ ଓଡ଼ିଶାର ମୁକୁଟ ବିହୀନ ସମ୍ରାଟ, ପ୍ରବାଦ ପୁରୁଷ ମୋର ଅତିପ୍ରିୟ ମଣିଷ ବିଜୁବାବୁ ଓରଫ୍ ବିଜୟାନନ୍ଦ ପଟ୍ଟନାୟକ।

ଚାହୁଁ ଚାହୁଁ ବିଦ୍ୟୁତ ବେଗରେ ବିଜୁବାବୁଙ୍କ ମୃତ୍ୟୁ ଖବର ଚାରିଆଡେ ପ୍ରଚାରିତ ହୋଇଗଲା । ଆରମ୍ଭ ହେଲା ବିଜୁଙ୍କର ଗୁଣଗାନ । ଭୁବନେଶ୍ୱର ଛକମାନଙ୍କରେ ବିଜୁଙ୍କର ଫଟୋ ରଖି ମନ ଭରି କାନ୍ଦିଲେ । ଦଳମତ ନିର୍ବିଶେଷରେ ସମସ୍ତେ ଧନୀ, ଗରିବ, କଂଗ୍ରେସ, ଜନତା ଓ ସାମ୍ୟବାଦୀ ସମସ୍ତେ ହୋଇଗଲେ ଏକାକାର । ଭୁବନେଶ୍ୱର ରାଜରାସ୍ତା ହୋଇଗଲା ଶୁନଶାନ । ସବୁ ଦୋକାନ ବଜାର ଛାଏଁ ଛାଏଁ ବନ୍ଦ । କେବଳ ଓଡ଼ିଶା ନୁହେଁ, ସାରା ଭାରତବର୍ଷ ଓ ଭାରତ ବାହାରେ ପାଳନ ହେଲା ନିରବ ପ୍ରାର୍ଥନା ଓ ଶୋକ ସଭା ।

ବିଜୁବାବୁ ଆଜି ସ୍ୱର୍ଗତ, ଏହା କେହି ମାନିବାକୁ ପ୍ରସ୍ତୁତ ନାହାନ୍ତି । ସତରେ ବିଜୁବାବୁ ଦିନେ ମରିଯିବେ, ତାଙ୍କର ପ୍ରିୟ କଳିଙ୍ଗକୁ ଛାଡି ଚାଲିଯିବେ, ଏ ଚିନ୍ତା କୌଣସି ଓଡ଼ିଆଙ୍କ ମନକୁ ଆସି ନଥିଲା । ସମସ୍ତେ ଚାହୁଁ ଥିଲେ ତାଙ୍କର ପ୍ରିୟନେତା, ଓଡ଼ିଶାର ମୁକୁଟ ବିହୀନ ସମ୍ରାଟ ସଦାସର୍ବଦା ବଞ୍ଚି ଥାଆନ୍ତୁ । ଓଡ଼ିଶା ଭିତରେ ବୁଲୁଥାନ୍ତୁ, ଭୁବନେଶ୍ୱରରୁ ଦିଲ୍ଲୀ ଯାଉଥାନ୍ତୁ ଏପରି ଅନେକ ଆଶା । କିନ୍ତୁ ଆଜି ହଠାତ୍ ସବୁ ଓଲଟ ପାଲଟ । ଓଡ଼ିଶାର ପ୍ରିୟ ମଣିଷ ଅସାଧାରଣ ବ୍ୟକ୍ତିତ୍ୱ, ପ୍ରଚଣ୍ଡ ପ୍ରତିଭାର ଅଧିକାରୀ ବିଜୁବାବୁ ଆଜି ମହାନିଦ୍ରାରେ ।

ଓଡ଼ିଶାରେ ଏହି ବୀରପୁରୁଷ, ଯୋଗଜନ୍ମା ଜନ୍ମ ହୋଇଥିଲେ ୧୯୧୬ ମସିହା ମାର୍ଚ୍ଚ ୫ ତାରିଖରେ କଟକ ତୁଳସୀପୁରସ୍ଥିତ ଆନନ୍ଦ ଭବନରେ । ପିତା ଲକ୍ଷ୍ମୀ ନାରାୟଣ ପଟ୍ଟନାୟକ ଓ ମାତା ଆଶାଲତା ଦେବୀ । ତୁଳସୀ ଦୁଇପତ୍ରରୁ ବାସେ । ଏହା ବିଜୁବାବୁଙ୍କ କ୍ଷେତ୍ରରେ ସମ୍ପୂର୍ଣ୍ଣ ଭାବେ ପ୍ରମାଣିତ ହୋଇଥିଲା । ପିଲାବେଳୁ ସେ ଥିଲେ ସାହସୀ, ବୀର ଏବଂ ନିଜର ସ୍ୱାଭିମାନ ପାଇଁ ଗୋରା ପୋଲିସର ମୁଣ୍ଡ ଫଟାଇ ଥିଲେ । ନେପୋଲିୟନ ବୋନାପାର୍ଟଙ୍କ ଭଳି ସେ ଥିଲେ ସାହସୀ । ତାଙ୍କ ଅଭିଧାନରେ 'ଅସମ୍ଭବ' ବୋଲି ଶବ୍ଦଟିଏ ନଥିଲା । ରାଜନୀତିରେ ଭୀଷ୍ମ ପିତାମହ ଆଖ୍ୟା ପାଇଥିଲେ ମଧ୍ୟ ଏହି ମହାନାୟକଙ୍କର ବିମାନ ଚାଳନା ପ୍ରତି ଥିଲା ବିରାଟ ଦୁର୍ବଳତା । ରେଭେନ୍ସା କଲେଜରୁ ପାଠପଢା ଅଧାରୁ ଛାଡି ସେ ସାଇକେଲ ଯୋଗେ ଯାଇଥିଲେ ପେଶାଓ୍ୱାର ଏବଂ ଏୟାର୍ ଫୋର୍ସ ଟ୍ରେନିଂ ନେଇ ଯୋଗ

ଦେଇଥିଲେ Indian National Air Waysରେ । ଜଣେ ଦୁଃସାହସିକ ଓ ନିର୍ଭୀକ ବିମାନ ଚାଳକ ରୂପେ ତାଙ୍କର ଯଥେଷ୍ଟ ଖ୍ୟାତି ଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଚୀନର କେତେକ ବିପ୍ଳବୀଙ୍କୁ ସାହାଯ୍ୟ କରିବା ପାଇଁ ସେ ଯେପରି ହିମାଳୟ ଉପରେ ବିମାନ ଉଡାଇ ଥିଲେ, ତାହା ତାଙ୍କ ପାଇଁ ଆଣିଥିଲା ଅପରିସୀମ ଖ୍ୟାତି । ସେହି ଦ୍ୱିତୀୟ ବିଶ୍ୱଯୁଦ୍ଧ ବେଳେ ଜାପାନର ବର୍ମା ଆକ୍ରମଣ ବେଳେ ଏହି ସାହସୀ ଓଡ଼ିଆ ବ୍ରିଟିଶ୍ ପରିବାରଙ୍କୁ ଉଦ୍ଧାର କରିବାରେ ସଫଳ ହୋଇଥିଲେ । ଏଥିପାଇଁ ବ୍ରିଟିଶ୍ ସରକାର ତାଙ୍କୁ ପ୍ରଶଂସାରେ ପୋତି ପକାଇ ଥିଲେ ।

ବ୍ରିଟିଶ ସରକାର ଅଧୀନରେ ଚାକିରି କରୁଥିଲେ ମଧ୍ୟ ଦେଶ ମାତୃକାର ସେବା ଓ କର୍ତ୍ତବ୍ୟକୁ ସେ ଭୁଲି ଯାଉ ନଥିଲେ । ଭାରତର ପ୍ରଖ୍ୟାତ ସ୍ୱାଧୀନତା ସଂଗ୍ରାମୀ ରାମ ମନୋହର ଲୋହିଆ ଓ ଜୟ ପ୍ରକାଶଙ୍କୁ ନିଜ ଘରେ ଲୁଚାଇ ରଖି ଗିରଫ ହେବାରୁ ରକ୍ଷା କରିଥିଲେ । କିନ୍ତୁ ଭାରତଛାଡ ଆନ୍ଦୋଳନ ସମୟରେ ତାଙ୍କୁ ବ୍ରିଟିଶ ସରକାର ଗିରଫ କରିଥିଲେ ଏବଂ ଜେଲରୁ ଖଲାସ ହେବା ମାତ୍ରେ ସେ ଖୋଲାଖୋଲି ଭାବେ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିଲେ ।

୧୯୪୭ ମସିହାରେ ପାକିସ୍ତାନ ଅଧିବାସୀଙ୍କ କାଶ୍ମୀର ଆକ୍ରମଣ ବେଳେ ସେ ଅପୂର୍ବ ସାହସ ପ୍ରଦର୍ଶନ କରି ବିମାନରେ ଭାରତର ଏକ ସୈନ୍ୟ ଦଳକୁ ସେଠାରେ ପହଞ୍ଚାଇ ଥିଲେ । ଏଥିରେ ନେହେରୁ ଅତ୍ୟନ୍ତ ଖୁସି ହୋଇ ବିଜୁଙ୍କୁ ଧନ୍ୟବାଦ ଦେଇଥିଲେ । ଏହାର କିଛିମାସ ପରେ ନେଦେରଲାଣ୍ଡ ବାହିନୀର ବୋମା ବର୍ଷଣ ସତ୍ତ୍ୱେ ସେ ତାଙ୍କ ଡାକୋଟା ବିମାନରେ ଜାକର୍ତ୍ତାରୁ ଇଣ୍ଡୋନେସିଆର ନେତା ସୁକର୍ଣ୍ଣ ଓ ଡକ୍ଟର ସୁଲତାନ ଜହିରଙ୍କୁ ଉଦ୍ଧାର କରି ବିଶ୍ୱବାସୀଙ୍କୁ ଚକିତ କରିଥିଲେ । ଏଥିପାଇଁ ଇଣ୍ଡୋନେସିଆର ସରକାର ତାଙ୍କ ଦେଶର ସର୍ବୋଚ୍ଚ ସମ୍ମାନ 'ଭୂମିପୁତ୍ର'ରେ ତାଙ୍କୁ ସମ୍ମାନିତ କରିଥିଲେ । ମାତ୍ର ୩୦ ବର୍ଷ ବୟସରେ ଓଡ଼ିଶାକୁ ଏକ ଅଗ୍ରଣୀ ରାଜ୍ୟରେ ପରିଣତ କରିବାର ସ୍ୱପ୍ନ ଦେଖିଥିଲେ ଯୁବକ ବିଜୁ ପଟ୍ଟନାୟକ । ଧମନୀରେ ତାଙ୍କର ଉଷ୍ମ ରକ୍ତ, ମନରେ ତାଙ୍କର ଅଦମ୍ୟ ସାହସ ଓ ଉସାହ । ତାଙ୍କର ସ୍ୱପ୍ନକୁ ଚରିତାର୍ଥ କରିବା ପାଇଁ ସେ ପ୍ରତିଷ୍ଠା କଲେ କଳିଙ୍ଗ ଶିଳ୍ପଗୋଷ୍ଠୀ, କଳିଙ୍ଗର ହୃତଗୌରବ ଓ ବିଭବକୁ ଫେରାଇ ଆଣିବା ପାଇଁ ସେ ପ୍ରତିଷ୍ଠା କଲେ କଳିଙ୍ଗ Airways । ଏହାଦ୍ୱାରା ସେ ଭାରତର ୧୦୦ ଜଣ ଶିଳ୍ପପତିମାନଙ୍କ ମଧ୍ୟରେ ନିଜକୁ ସାମିଲ କରିଥିଲେ ।

ଓଡ଼ିଶାର ରାଜନୀତିରେ ବିଜୁବାବୁଙ୍କ ରାଜନୈତିକ ଜୀବନ ଥିଲା ଅର୍ଦ୍ଧ ଶତାବ୍ଦୀର ଇତିହାସ । ବିରୋଧୀ ଦଳରେ ସେ ପ୍ରାୟ ୩୦ ବର୍ଷ କାର୍ଯ୍ୟ କରିଥିବା ବେଳେ କ୍ଷମତାର ମାତ୍ର ୧୦ ବର୍ଷ ରହିଥିଲେ । ପ୍ରଦେଶ କଂଗ୍ରେସ କମିଟିର ନେତୃତ୍ୱ ନେଇ ଏହି ଓଡ଼ିଆ ପୁଅ ୧୯୬୧ ମସିହାରେ ହୋଇଥିଲେ ଓଡ଼ିଶାର ମୁଖ୍ୟମନ୍ତ୍ରୀ । ମାତ୍ର ୨ବର୍ଷ କ୍ଷମତାରେ ଥିବା ସମୟରେ ସେ ଓଡ଼ିଶାରେ ଆରମ୍ଭ କରିଥିଲେ ନିର୍ମାତାର ଯୁଗ । ତାଙ୍କ ନେତୃତ୍ୱରେ ପାରାଦ୍ୱୀପ ବନ୍ଦର, ଦୈତାରୀ–ପାରାଦ୍ୱୀପ ଜାତୀୟ ରାଜପଥ, ରାଉରକେଲା, ରିଜିଓନାଲ୍ ଇଞ୍ଜିନିୟରିଂ କଲେଜ, ଓୟୁଏଟି, ସୁନାବେଡାରେ ମିଗ ବିମାନ କାରଖାନା ଓ ତାଳଚେର ତାପଜ ବିଦ୍ୟୁତ କେନ୍ଦ୍ର ଆଦି ପ୍ରତିଷ୍ଠା ହୋଇଥିଲା । ସେ ଥିଲେ ଭାରତର ପ୍ରଥମ ମୁଖ୍ୟମନ୍ତ୍ରୀ ଯେକି ୬୦ ଦଶକରେ ପଞ୍ଚାୟତକୁ ଅଧିକ କ୍ଷମତା ଦେବା ପାଇଁ ଆରମ୍ଭ କରିଥିଲେ ନୂଆ ଯୋଜନା ।

ଇନ୍ଦିରା ଗାନ୍ଧୀଙ୍କ ସହ ମନୋମାଳିନ୍ୟ ଯୋଗୁଁ ବିଜୁ ଛାଡିଥିଲେ କଂଗ୍ରେସ ଦଳ ଏବଂ ଗଠନ କରିଥିଲେ ଉତ୍କଳ କଂଗ୍ରେସ ନାମରେ ଆଞ୍ଚଳିକ ଦଳ । ସେ ନିଜେ ପରାଜିତ ହୋଇଥିଲେ ମଧ୍ୟ ତାଙ୍କ ଦଳ ୩୩ଟି ଆସନ ପାଇ ସ୍ୱତନ୍ତ୍ର ଦଳ ଓ ଝାଡଖଣ୍ଡ ପାର୍ଟି ସହ ମିଶି ଗଠନ କରିଥିଲେ ମିଳିତ ସରକାର । ୧୯୭୩ ମସିହାରେ ତାଙ୍କ ପାଖରେ ବହୁମତ ଥିଲେ ମଧ୍ୟ ନନ୍ଦିନୀ ସରକାରଙ୍କ ପତନ ପରେ ସେ ମୁଖ୍ୟମନ୍ତ୍ରୀ ହୋଇପାରି ନଥିଲେ । କାରଣ ତତ୍କାଳୀନ ରାଜ୍ୟପାଳ ବି.ଡି.ଜତି, ବିଧାନ ସଭାକୁ ଭାଙ୍ଗି ଦେଇଥିଲେ । ୧୯୭୧ ମସିହା ଜରୁରୀ ପରିସ୍ଥିତି ସମୟରେ ଭାରତବର୍ଷର ଯେଉଁ ମହାନ ନେତାମାନେ କାରାବରଣ କଲେ, ସେମାନଙ୍କ ମଧ୍ୟରେ ଥିଲେ ପ୍ରବଳ ପ୍ରତାପୀ ବିଜୁବାବୁ । ୧୯୭୬ରେ ଜେଲ୍‌ରୁ ଖଲାସ ହେବା ପରେ ସେ ଯୋଗ ଦେଇଥିଲେ ଜନତା ପାର୍ଟିରେ ଏବଂ କେନ୍ଦ୍ରାପଡାରୁ ନିର୍ବାଚିତ ହୋଇଥିଲେ ଲୋକସଭାକୁ । ବିଜୁ ଥିଲେ କେନ୍ଦ୍ରର ଖଣି ଓ ଇସ୍ପାତ ମନ୍ତ୍ରୀ । ଏହାପରେ ବିଜୁ ଆଉ ପରାଜୟର ମୁହଁ ଦେଖି ନାହାନ୍ତି । ୧୯୮୦, ୧୯୮୫ ଲୋକସଭା ନିର୍ବାଚନରେ ସେ କେନ୍ଦ୍ରାପଡାରୁ ଲୋକସଭାକୁ ନିର୍ବାଚିତ ହୋଇଥିଲେ ଏବଂ ୧୯୮୫ରେ ଲୋକସଭାରୁ ଇସ୍ତଫା ଦେଇ ହୋଇଥିଲେ ଓଡ଼ିଶା ବିଧାନସଭାର ବିରୋଧୀଦଳ ନେତା ୧୯୮୫ରୁ ୧୯୯୦ ଓ ୧୯୯୦ରେ ତାଙ୍କ ଜୀବନର ଓ ଓଡ଼ିଶା ବିଧାନସଭାର ରାଜନୈତିକ ଇତିହାସର ସବୁଠାରୁ ବଡ ବିଜୟର ସେ ଥିଲେ କର୍ଣ୍ଣଧାର । ତାଙ୍କ ନେତୃତ୍ୱରେ ଜନତା ଦଳ ୧୪୭ ବିଧାନସଭାରେ ପାଇଲେ ୧୨୩ ଆସନ । ୭୫ବର୍ଷର ବିଜୁ ଶପଥ ନେଲେ ମୁଖ୍ୟମନ୍ତ୍ରୀ ଭାବରେ । ବୟସର

ଛାପ ତାଙ୍କ ଶରୀରରେ ଥିଲେ ମଧ ମନ ଥିଲା ଯୁବକ ଭଳି । ପୁଣି ଆରମ୍ଭ ହେଲା ଓଡ଼ିଶାରେ ତାଙ୍କ ବହୁ ପ୍ରତୀକ୍ଷିତ ନିର୍ମାଣର ଯୁଗ । ତ୍ରିସ୍ତରୀୟ ପଞ୍ଚାୟତ ବ୍ୟବସ୍ଥା ଓ ଦ୍ୱିତୀୟ ଇସ୍ପାତ କାରଖାନା ସୁକିନ୍ଦାର ଜଖପୁରାଠାରେ ହେଲା ଭୂମିପୂଜା । ବିଳମ୍ବ ହେଲେ ମଧ ୨ଟି ନୁହେଁ, ସୁକିନ୍ଦା ମାଟିରେ ପ୍ରତିଷ୍ଠା ହେଲା ୧୩ଗୋଟି ଇସ୍ପାତ କାରଖାନା । ଏସିଆର ସର୍ବବୃହତ ଶିଳ୍ପନଗର ଭାବେ ମୁଣ୍ଡ ଟେକିଲା ବିଜୁଙ୍କର ମାନସ ସନ୍ତାନ କଳିଙ୍ଗନଗର । ମୋର ମନେପଡେ ଡୁବୁରୀ ହାଟ ପଡିଆରେ ଏକ ସଭା । ପ୍ରାୟ ୧୯୯୧ ମସିହା, ଲୋକସଭା ନିର୍ବାଚନ ପ୍ରଚାରରେ ଆସିଥାନ୍ତି ବିଜୁ। ତାଙ୍କୁ ଦେଖିବା ପାଇଁ ନାହିଁ ନଥିବା ଭିଡ । ମୁଁ ବି ଯାଇଥାଏ ଦେଖିବା ପାଇଁ ମୋର ପ୍ରିୟ ମଣିଷକୁ । କାରଣ ସମସ୍ତ ଓଡ଼ିଆମାନଙ୍କ ମଧରେ ସେ ଥିଲେ ମୋର ପ୍ରଥମ ପସନ୍ଦ ଓଡ଼ିଆ । ସେ କହୁଥାନ୍ତି, ଜଣେ ଆଦିବାସୀ ମହିଳାକୁ 'ଆଲୋ ଝିଅ ! କେତେ ଟଙ୍କା ମଜୁରୀ ପାଉଛୁ ? ୨୫ ଟଙ୍କା ତ ମଜୁରୀ ହେଲାଣି, ତୁ ପାଉଛୁନା ନାହିଁ ?' 'ମୋ ବ୍ରାହ୍ମଣୀ ନଦୀରେ ପାଣି ଅଛି, ସୁକିନ୍ଦା ଖଣିରେ କ୍ରୋମାଇଟ ଅଛି, ଟମକା ଦୈତାରୀଠାରେ ପ୍ରଚୁର ଲୁହାପଥର ଅଛି, ତୁମେ ସବୁ ମୋର ଲୋକ ଅଛ, ତେବେ ଏଠାରେ କାହିଁକି ଇସ୍ପାତ କାରଖାନା ହେବନି ? ନିଶ୍ଚିତ ହେବ ।' ଏହାଥିଲା ଦେଶପ୍ରେମୀ, ଜାତିପ୍ରେମୀ ଓଡ଼ିଆର ଭାଷା ।

ତାଙ୍କୁ ଇଣ୍ଡୋନେସିଆ ସରକାର 'ଭୂମିପୁତ୍ର' ଉପାଧିରେ ଭୂଷିତ କରିଥିଲେ । ସେ ଥିଲେ ସାହସର ସାତ ସମୁଦ୍ର । ପଛଘୁଞ୍ଚ ଦେବା ତାଙ୍କ ଜୀବନରେ ନଥିଲା । ସେ ଥରେ ସିଦ୍ଧାନ୍ତ ନେଲେ ତହିଁରେ ମୋଟେ ହଟୁ ନଥିଲେ । ୧୯୯୫ ନିର୍ବାଚନ ଏହାର ଏକ ଜ୍ୱଳନ୍ତ ଉଦାହରଣ । କମ୍ୟୁନିଷ୍ଟମାନଙ୍କ ସହ ମେଣ୍ଟ ନକରିବା ତାଙ୍କ ପାଇଁ ମହଙ୍ଗା ହୋଇଥିଲା । ନଚେତ୍ ସେ ପୁଣି କ୍ଷମତାକୁ ଆସିଥାନ୍ତେ, ଏଥିରେ ତିଳେମାତ୍ର ସନ୍ଦେହ ନଥିଲା ।

ବିଜୁବାବୁ ଆଜି ମରିସୁଦ୍ଧା ଅମର । ତାଙ୍କର ଗତିଶୀଳ ବ୍ୟକ୍ତିତ୍ୱ, ଅଦମ୍ୟ ସାହସ ଓ ନିସ୍ୱାର୍ଥପର ସେବା ପାଇଁ ସେ କେବଳ ଓଡ଼ିଶା ଓ ଭାରତ ନୁହେଁ, ସାରା ବିଶ୍ୱରେ ଚିର ସ୍ମରଣୀୟ ଓ ବନ୍ଦନୀୟ । ସେ ଥିଲେ ବାସ୍ତବରେ କାଳଜୟୀ ପୁରୁଷ । ମୃତ୍ୟୁ ତାଙ୍କ ପାଖରେ ହାର ମାନିଛି । ସେ ହିଁ ପ୍ରକୃତରେ ବିଂଶ ଶତାବ୍ଦୀର ମହାନାୟକ ।

ଉପାଧକ୍ଷ, ଝାଡେଶ୍ୱର ମହାବିଦ୍ୟାଳୟ
ଜେମାଦେଇପୁର ଶାସନ
ଟୋଲକାନୀ, ଜିଲ୍ଲା- ଯାଜପୁର



# ବିଶ୍ୱ ଚେତନାର କବି ଭୀମ ଭୋଇ

ଡକ୍ଟର ବିରଂଚି ସାହୁ

ଓଡ଼ିଶାର ଆତ୍ମା, ତା'ର ସାଧୁ ସଜ୍ଜନ, ସନ୍ନ୍ୟାସୀମାନଙ୍କ ଜୀବନ ଦର୍ଶନରେ ପୂରି ରହିଛି । ସେମାନେ ଯେଉଁ ମହାନ୍ ଚିନ୍ତାଧାରାର ବଶବର୍ତ୍ତୀ ହୋଇଛନ୍ତି, ସେହି ଭାବଧାରା ଦ୍ୱାରା ସେମାନେ ଅନୁପ୍ରାଣିତ କରାନ୍ତି ଏ ଦେଶର ଅନ୍ଧକାରାଚ୍ଛନ୍ନ ମଣିଷ ସମାଜକୁ । ନୂତନ ଆଲୋକରେ ଅଭିମନ୍ତ୍ରିତ କରାନ୍ତି । ମଣିଷ ସମାଜକୁ ସେମାନେ ଦିଅନ୍ତି ଦିଗ୍‌ଦର୍ଶନ । ନିଜେ ଅନ୍ଧାର ଭିତରେ ଥାଇ, ନୀଳକଣ୍ଠ ସାଜି ମଣିଷଙ୍କ ଭିତରୁ ପାପ, କାଳିମାକୁ ପୋଛି ଦିଅନ୍ତି । ଏହି ଭାବଧାରାର ଜଣେ କବି, ମନୀଷୀ, ସନ୍ଥ ଥିଲେ– 'ଭୀମ ଭୋଇ' ।

ସବୁ ମଣିଷ କବି ନୁହନ୍ତି କି ସବୁ କବିଙ୍କ ଭିତରେ ମଣିଷତ୍ୱ ନଥାଏ । କବି ଆଉ ମଣିଷ ପରସ୍ପର ସମ୍ବନ୍ଧାନ୍ୱିତ ହେଲେ ମଧ୍ୟ ଦୁଇଟିଯାକର ପାରସ୍ପରିକ ସମ୍ବଳ ସବୁବେଳେ ସମ୍ଭବ ହୁଏ ନାହିଁ । କବି ମାତ୍ରେ ତ ମଣିଷ କିନ୍ତୁ ମଣିଷପଣିଆ ସମସ୍ତଙ୍କ ଭିତରେ ଖୋଜିଲେ ନିରାଶ ହେବାକୁ ପଡେ । ଏ ଦୁଇଟିଯାକ ଗୁଣ କିନ୍ତୁ ଏକାବେଳେ ଭୀମ ଭୋଇଙ୍କ ପାଖରେ ଥିଲା । ଅର୍ଥାତ୍ ଭୀମ ଭୋଇ ଥିଲେ ମଣିଷ ଆଉ କବି । ଯିଏ ନିଜର କବିତା ମାଧ୍ୟମରେ ସଚରାଚର ମଣିଷଙ୍କ ପାଇଁ ଅଶ୍ରୁ ନିଗାଡୁ ଥିଲେ । ମଣିଷକୁ ମଣିଷ ବୋଲି ବିଚାରୁଥିଲେ । ସେ ଥିଲେ ବିଶ୍ୱ ଚେତନାର କବି ।

ଊନବିଂଶ ଓ ବିଂଶ ଶତାବ୍ଦୀର ସନ୍ଧିକ୍ଷଣରେ (୧୮୪୮– ୧୮୯୫) ଭୀମ ଭୋଇଙ୍କ ଜୀବନକାଳ । ଏତେବେଳକୁ ଓଡିଶାରେ ଇଂରେଜମାନଙ୍କ ଅପଶାସନର ଆରମ୍ଭ ଘଟିଲାଣି । ବିଭିନ୍ନ ଧର୍ମର ସୂତ୍ରପାତ ସହିତ ମହିମା ଧର୍ମର ପ୍ରସାର ଆରମ୍ଭ ହେଲାଣି ତଥାପି ନିରକ୍ଷର ଆଉ ଗହୀର ଅନ୍ଧାର ଭିତରେ ମଥାକୁ ବୁଡାଇ ବଞ୍ଚିଥିଲେ ସୁଦ୍ଧା ଭୀମ ଭୋଇ ଜଣାଉଥିଲେ ଦୁଃଖ ଯାତନାରେ ମଣିଷ ନରହିବା ପାଇଁ ଠାକୁରଙ୍କୁ । ତାଙ୍କ ଠାକୁର ଥିଲେ ଅଣାକାର, ଅରୂପ, ଅଲେଖ ନିରଂଜନ, ଶୂନ୍ୟପୁରୁଷ । ପାଣି ପାଦ ନଥିଲା ତାଙ୍କର । ଅପାଣିପାଦ ସତ୍ତ୍ୱେ ତାଙ୍କର ଠାକୁର ଛପନ କୋଟି ମଣିଷଙ୍କୁ ଦେଖୁଥିଲେ । ଆଉ ତାଙ୍କରି ଦାୟିତ୍ୱ ନେଉଥିଲେ। ଗୋଟିଏ ଗହୀର ଅନ୍ଧାର ଭିତରେ ଅଧାଲଙ୍ଗଳା ମଣିଷଟିର କି ଉଚ୍ଚ ଭାବନା ଥିଲା ସତେ । ଆଉ ସେ ଉଚ୍ଚ ଭାବନା ଆସିବା ସେତେବେଳେ ବଡ ଆଚମ୍ବିତ କଥା । ମଧ୍ୟଯୁଗୀୟ ଓଡିଆ ସାହିତ୍ୟାକାଶର ଶେଷ ଅସ୍ତମିତ ସୂର୍ଯ୍ୟ ଥିଲେ ଭୀମ ଭୋଇ । ଭୀମ ଭୋଇଙ୍କୁ ନେଇ କେତେ ଯେ ଖେଳ କସରତ ଚାଲିଥିଲା ଏବଂ ଅଦ୍ୟାବଧି ମଧ୍ୟ ଏହାର ପରିସମାପ୍ତି ଘଟି ନାହିଁ । କିଏ ତାଙ୍କୁ କେତେ ଭଳି କହିଛନ୍ତି– ସେ ଅନ୍ଧ ଥିଲେ, କନ୍ଧ ଥିଲେ, ଅନ୍ଧାରକଣା ଥିଲେ, ତା'ବାଦ୍ ତାଙ୍କ ଜନ୍ମସ୍ଥାନକୁ ନେଇ ମଧ୍ୟ ବାଦାନୁବାଦ । ତାହା ପୁଣି ଖଲିଆପାଲି, ସୋନପୁର, ଗ୍ରାମଡିହା ଆଦି । କିନ୍ତୁ ଏସବୁ କଥାକୁ ବାଦ୍‌ଦେଲେ ଭୀମ ଭୋଇ ଥିଲେ ମହାନ୍ କବି ଦାର୍ଶନିକ, ସନ୍ଥ ଓ ମହିମା ଧର୍ମର ଶ୍ରେଷ୍ଠ ପୂଜାରୀ । ଏଯାଏଁ ଦୁଇଜଣ କବି ନିଜକୁ ଅଂଧକାର ଭିତରକୁ ଠେଲି ଏକ ଉଦାତ୍ତ ଆହ୍ୱାନ ଦେଇଥିଲେ । ପ୍ରଥମେ ଭୀମ ଭୋଇ ଓ ଦ୍ୱିତୀୟରେ ଉତ୍କଳମଣି ଗୋପବନ୍ଧୁ । ଗୋପବନ୍ଧୁଙ୍କ ଚିନ୍ତାଧାରା କେବଳ ଦେଶ ଓ ଦେଶବାସୀଙ୍କ ଉଦ୍ଦେଶ୍ୟରେ ଉଦ୍ଦିଷ୍ଟ ଥିଲା । କିନ୍ତୁ ବିଶ୍ୱ ଚେତନାର କବି ଥିଲେ ଭୀମ ଭୋଇ । ବିଶ୍ୱବାସୀଙ୍କ ମଙ୍ଗଳ ପାଇଁ ନିଜକୁ ନର୍କଗାମୀ କରିବା ପାଇଁ ସୁଦ୍ଧା ପଛଘୁଞ୍ଚା ଦେଇ ନାହାନ୍ତି । ସେହି ଉଦାତ୍ତ ଆହ୍ୱାନ ଆଜି କାହିଁକି ଆସନ୍ତା ଯୁଗ ଯୁଗ ପାଇଁ ମଧ୍ୟ ପ୍ରତିଟି ହୃଦୟରେ ଅନୁରଣିତ ହେଉଥିବ । ଜଗତକୁ ଦୁଃଖ ଯନ୍ତ୍ରଣାରୁ ଉଦ୍ଧାର କରିବା ପାଇଁ ହେଲେ ତାଙ୍କ ଜୀବନକୁ ନର୍କଗାମୀ ହେବାକୁ ଯଦି ପଡେ, ତେବେ ସେ ଦୁଃଖ କରିବେ ନାହିଁ, ଏ ପ୍ରକାର ଉଦ୍‌ଘୋଷଣା ଆଜିଯାଏ ସମଗ୍ର ଉତ୍କଳରେ କାହିଁକି ଭାରତବର୍ଷରେ ବା ପୃଥିବୀରେ କେହି କରି ନାହାନ୍ତି, ଭୀମ ଭୋଇକୁ ଛାଡିଦେଲେ ।

ତାଙ୍କ ଜୀବନ ଥିଲା ବଡ ଦୁଃଖପୂର୍ଣ୍ଣ । ପିଲାବେଳେ ଅନେକ ଦୁଃଖକଷ୍ଟ ସହ୍ୟ କରିଛନ୍ତି । ଅଧିକାଂଶ ସମୟ ତାଙ୍କର କଟିଛି ଅରଣ୍ୟରେ । ସେଥିପାଇଁ ଅରଣ୍ୟ ଆଉ ଝରଣାର କୁଳୁ କୁଳୁ ନାଦ ତାଙ୍କ କବି ପ୍ରାଣକୁ ଆମୋଦିତ କରିଥିଲା । ଶାନ୍ତିର ତପୋବନ ଏହି ଅରଣ୍ୟ ଆଉ ଝରଣାକୁ ସେ ବାଛିଥିଲେ । ଝରଣାର ପାଣିକୁ ପିଇ ତାଙ୍କ ଜୀବନର ଅନେକ ସମୟ କଟିଛି ।

ପାଠ ପଢି ନଥିବା ଏହି ବ୍ୟକ୍ତିସତ୍ତା ଅନ୍ଧାରରେ ରହି ଆଲୋକ ବର୍ତ୍ତିକା ଜାଳି ଅନ୍ୟମାନଙ୍କୁ ଦିଗ୍‌ଦର୍ଶନ ଦେଇଛନ୍ତି । ମୁକ୍ତିର ମଶାଲ ହାତରେ ଧରିଛନ୍ତି । କବିତା ମାଧ୍ୟମରେ ସେ ନୂତନ ଚେତନା ସୃଷ୍ଟି କରିଛନ୍ତି । ବିଶ୍ୱ ଚିନ୍ତାଧାରା ତାଙ୍କ ଲେଖାରେ ଅନୁରଣିତ । ମଣିଷ ମାତ୍ରକର ଦୁଃଖ ଶୋକରେ ମର୍ମାହତ, ଭୌଗୋଳିକ ସୀମାରେଖାର ଊର୍ଦ୍ଧ୍ୱରେ ରହି ଧର୍ମ, ଜାତି, ଭାଷାରେ ସମସ୍ତେ ଏକ– ଏହି ଚିନ୍ତାଧାରାକୁ ପ୍ରକଟ କରିଥିଲେ । ଆଉସବୁ ମୂଳରେ ପୃଥିବୀର ସଚରାଚର ଛପନ କୋଟି ଜୀବଙ୍କୁ ଭଲ ପାଉଥିଲେ ।

ଭୀମ ଭୋଇଙ୍କ ଜନ୍ମରୁ ମୃତ୍ୟୁଯାଏ, ଏହି ସମୟ ଥିଲା ଓଡ଼ିଶା ପାଇଁ ବିପର୍ଯ୍ୟୟର ସମୟ । ସ୍ୱତନ୍ତ୍ର ଓଡ଼ିଶା କହିଲେ କେଉଁଠୁ କେଉଁଯାଏ, ତା'ର ସୀମାରେଖା ନିର୍ଦ୍ଦିଷ୍ଟ ନଥିଲା । କୁସଂସ୍କାର, ଅନ୍ଧବିଶ୍ୱାସର ବଶବର୍ତ୍ତୀ ଥିଲେ ଓଡ଼ିଶାବାସୀ । ବ୍ରାହ୍ମଣ୍ୟ ଧର୍ମର ପ୍ରାଧାନ୍ୟ ବଳବତ୍ତର ଥିଲା । ପୌତ୍ତଳିକତାର ଉପଚାର, ଧର୍ମକୁ ନେଇ ଟଣାଓଟରା ଖୁବ୍ ଜୋରରେ ଚାଲିଥିଲା । ମୋଟାମୋଟି ଏକ ସନ୍ଧିକ୍ଷଣରେ ଭୀମ ଭୋଇଙ୍କ ଆବିର୍ଭାବ ଓ ତିରୋଧାନ । ତେଣୁ ମଣିଷ ସମାଜକୁ ଅନ୍ଧକାରରୁ ଆଲୋକକୁ ଆଣିବାର ପ୍ରବଳ ଉଦ୍ୟମ ତାଙ୍କର ଥିଲା । ଓଡ଼ିଶାରେ ଊନବିଂଶ ଶତାବ୍ଦୀ ଏକ ସନ୍ଧିକ୍ଷଣ । ଅର୍ଥାତ୍, ଏହି ସମୟରେ ଓଡ଼ିଶାରେ ନବଜାଗରଣ ବା ରେନେସାଁ ସୃଷ୍ଟି ପାଇଁ ଚାଲିଥିଲା ସଂଘର୍ଷ । ତାହା ପୁଣି ବିଭିନ୍ନ କ୍ଷେତ୍ରରେ । ସାହିତ୍ୟ, ଧର୍ମ, ଜାତିପ୍ରଥା ଆଦି ବିବିଧ କ୍ଷେତ୍ରରେ । ଏହି ସମୟରେ ମହିମାଧର୍ମ ଓଡ଼ିଶାରେ ପ୍ରଚାରିତ ହୋଇ ଜାତିଭେଦ ଓ ପୌତ୍ତଳିକତା ବିରୋଧରେ ସଂଗ୍ରାମ କଲା ଓ ନାରୀ ପ୍ରତି ମର୍ଯ୍ୟାଦାବୋଧ ପାଇଁ ଆହ୍ୱାନ ଦେଲା । ଏହି ମହିମାଧର୍ମର ପୃଷ୍ଠପୋଷକ ଥିଲେ ଭୀମ ଭୋଇ । ଭଜନ, ଜଣାଣ, ଚଉତିଶା ଗୀତା ଆଦି ଭିନ୍ନ ଭିନ୍ନ ମାଧ୍ୟମରେ ସେ ତାଙ୍କର ଚିନ୍ତାଧାରା ବ୍ୟକ୍ତ କରିଥିଲେ । ଯେତେବେଳେ ସାରା ଓଡ଼ିଶାରେ ପାଶ୍ଚାତ୍ୟ ଶିକ୍ଷା, ସଭ୍ୟତା, ସଂସ୍କୃତିରେ କିଛି ଲୋକ ଅବ୍ୟାହନ କରୁଥିଲେ ସେହି ସମୟରେ ଏକ ସଂକୀର୍ଣ୍ଣ ଅନ୍ଧାର ପରିବେଶରେ ଏବଂ ସବୁଠାରୁ ନିରାପଦ ଦୂରତାରେ ରହି ଭୀମ ଭୋଇ ବିଶ୍ୱ ମାନବିକତାର ବାଣୀ ପ୍ରଚାର କରୁଥିଲେ । ସମଗ୍ର ପୃଥିବୀ, ମାନବ ସଭ୍ୟତା ଗୋଟିଏ ଡୋରିରେ ବନ୍ଧା । ଏ ସୃଷ୍ଟି ଗୋଟିଏ, ଆଉ ସମସ୍ତେ ସେହି ମହାନ ସ୍ରଷ୍ଟାଙ୍କ ସନ୍ତାନ । ଯଦିଓ ଭୀମ ଭୋଇ ମୂର୍ତ୍ତି ପୂଜାର ବିରୋଧୀ ଥିଲେ, କାରଣ ମହିମା ଧର୍ମାବଲମ୍ବୀମାନେ ଶୂନ୍ୟ, ଅଣାକାର, ଅଲେଖ ନିରଞ୍ଜନଙ୍କ ଉପାସକ, ସେ ଯାହା ହେଉନା କାହିଁକି,

'ଏକ ଖଣ୍ଡ ହାଡ ବୁନ୍ଦାଏ ରୁଧିର ଫୁଟେ ମାଉଁସ ଜାଣଇ
ତେଣୁ କରି ସିନା ପ୍ରାଣୀଙ୍କ ବିକଳ ସହି ନପାରଇ ମୁହିଁ ।'

ଏ ପ୍ରକାର ମାନବିକତାର ଅନ୍ତଃସ୍ୱର ଝରିବା ଏତେ ସହଜ କଥା ନୁହେଁ । ସେ ପ୍ରକାର ଭାବନା, ଅନ୍ତର୍ଦୃଷ୍ଟି ନରହିଲେ ପ୍ରାଣୀଙ୍କ ବିକଳ ସହି ନପାରିବା ଭଳି ଉଦାତ୍ତ ସ୍ୱର ସମସ୍ତଙ୍କଠାରୁ ଝରିବ ନାହିଁ । ସ୍ତୁତି ଚିନ୍ତାମଣି, ଶ୍ରୁତିନିଷେଧ ଗୀତା, ଆଦି ଅନ୍ତଗୀତା, ଅଷ୍ଟକ ବିହାରୀ ଗୀତା, ଚଉତିଶା ମଧୁଚନ୍ଦ୍ର, ମହିମା ମଣ୍ଡଳ, ମନୁସଭା ମଣ୍ଡଳ ଆଦି ଭୀମ ଭୋଇଙ୍କ ଗୋଟିଏ ଗୋଟିଏ ଅମୂଲ୍ୟ ଗ୍ରନ୍ଥ । ସବୁ ଲେଖାରେ ତାଙ୍କର ମଣିଷ ପ୍ରତି ଅଛି ସମ୍ବେଦନଶୀଳ ଭାବ । ସ୍ତୁତି ଚିନ୍ତାମଣି ଏସବୁର ଊର୍ଦ୍ଧ୍ୱରେ । ଓଡ଼ିଆ ସାହିତ୍ୟରେ ତାହା ଖଣ୍ଡିଏ ମଣି ସଦୃଶ ଆଜିଯାଏ ପ୍ରତିଭାତ । ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସେ ବୁଝିଥିଲେ ମଣିଷ ଏକ । ଜାତି ଦୁଇ ପ୍ରକାର ତାହା ହେଲା ପୁରୁଷ ଓ ନାରୀ ।

ବିଶ୍ୱ ଚେତନାର, ବିଶ୍ୱ ପ୍ରାଣତାର, ବିଶ୍ୱ ମାନବିକତାର, ସାର୍ବଜନୀନତାର ମନ୍ତ୍ର କେବଳ ସେହି ଯୁଗପୁରୁଷ ହିଁ ଗାଇ ଉଠିଥିଲେ । ସମସ୍ତଙ୍କୁ ନୂତନ ଏକ ଆଲୋକ ଦେଖାଇଥିଲେ । ଏ ବାଣୀ କେବଳ ଓଡ଼ିଶା ବା ଭାରତ ପାଇଁ ନୁହେଁ ସମଗ୍ର ବିଶ୍ୱବାସୀଙ୍କ ପାଇଁ । ଯିଏ ଏଭଳି କଥା ଲେଖି ଦେଇପାରେ ସେ କ'ଣ କମ୍ ବଡଲୋକ ହୋଇପାରେ ? ଧନରେ ନୁହେଁ, ଶିକ୍ଷାରେ ନୁହେଁ,– ଏ ପ୍ରକାର କଥାକୁ ଲେଖି ସେ ବିଶ୍ୱ କବିର ଆଖ୍ୟା ପାଇବାକୁ ଯୋଗ୍ୟ । ତାଙ୍କ ସମ୍ପର୍କରେ ଐତିହାସିକ ବି.ସି. ମଜୁମ୍‌ଦାର 'Typical Selections from Oriya Literature' ଗ୍ରନ୍ଥରେ ଲେଖିଥିଲେ– 'In My humble opinion, he (Bhima bhoi) is a genius and for his moral courage and Clarity of thought, he is a unique Personality in Orissa'.

---

ଅଧ୍ୟାପକ, ଓଡ଼ିଆ ବିଭାଗ
ଉତ୍କଳ ଭାରତୀ ବିଜ୍ଞାନ ମହାବିଦ୍ୟାଳୟ
ପଳାଶୁଣି, ଭୁବନେଶ୍ୱର–୨୫

# ସାହିତ୍ୟ ସମ୍ରାଟ ବିକ୍ରମଦେବ ବର୍ମା

ଇଂ ନିରାକାର ମହାଳିକ

ଜୟପୁର (କୋରାପୁଟ) ରାଜବଂଶୀୟ ବିକ୍ରମଦେବ ବର୍ମା ତତ୍କାଳୀନ ଗଞ୍ଜାମ (ବିଶାଖାପାଟଣା) ଜିଲ୍ଲାର ସିକାକୋଲ ପ୍ରଗଣାର ବଂଶଧାରା ନଦୀର ଦକ୍ଷିଣ କୂଳସ୍ଥ ପର୍ବତଲାପେଟା ଗ୍ରାମରେ ମାତା ରେଖାଦେବୀ ଓ ପିତା କୃଷ୍ଣଚନ୍ଦ୍ର ଦେବଙ୍କ ଔରସରୁ ୧୮୬୯ ଖ୍ରୀଷ୍ଟାବ୍ଦ ଜୁନ୍ ମାସ ୨୮ ତାରିଖ ରବିବାର ରାତ୍ର ୨ଘଣ୍ଟା ସମୟରେ ଜନ୍ମ ଗ୍ରହଣ କରିଥିଲେ । ପର୍ବତଲାପେଟା ପ୍ରାଚୀନ କଳିଙ୍ଗ ରାଜ୍ୟର ରାଜଧାନୀ ମୁଖଲିଙ୍ଗଠାରୁ ପ୍ରାୟ ତିନି କି.ମି. ଦୂର ବଂଶଧାରା ନଦୀର ଅପର ପାର୍ଶ୍ୱରେ ଅବସ୍ଥିତ । ମାତ୍ର ନଅବର୍ଷରେ ମାତା ଓ ପନ୍ଦର ବର୍ଷରେ ପିତାଙ୍କୁ ହରାଇ ସେ ଛେଉଣ୍ଡ ହୋଇଯାଇଥିଲେ । ଆଠବର୍ଷ ବୟସରୁ ସେ ମାଡଗୁଳ ରାଜ ପରିବାରରେ ପୋଷ୍ୟପୁତ୍ର ହେଲେ । ମାଡଗୁଳ ରାଜାଙ୍କ ଦେହାନ୍ତ ପରେ ଅଦାଲତରେ କେସ୍ ଲାଗି ପୋଷ୍ୟପୁତ୍ର ଦଲିଲ ରଦ୍ଦ ହେଲା ପରେ ପୁଣି ପିତାଙ୍କ ପାଖକୁ ଫେରି ଆସି ବିଶାଖାପାଟଣାରେ ଅବସ୍ଥାନ କଲେ । ପୂର୍ବରୁ ସେ ତାଙ୍କର ପୁରୋହିତଙ୍କ ଭାଇ ରଘୁନାଥ ଓ ତେଲୁଗୁ ଶିକ୍ଷକ ବୁଚିରାଜୁଙ୍କଠାରୁ ଓଡ଼ିଆ ଓ ତେଲୁଗୁ ଶିକ୍ଷା ପ୍ରାପ୍ତ ହୋଇଥିଲେ । ବିଶାଖାପାଟଣାରେ ବୌଡୀ ସାହେବ (ମିଷ୍ଟର ଜେ.ଏସ୍.ବାର୍ଡ)ଙ୍କ ଠାରୁ ଇଂରାଜୀ ଭାଷା ଶିକ୍ଷା କଲେ । ୧୮୦୮ ମସିହାରେ ନବରଙ୍ଗପୁରର ମହାରାଣୀ ସୁଲୋଚନା ଦେବୀଙ୍କ ନାତୁଣୀ (ପିତୃବଂଶ ବଲାଙ୍ଗୀର ଚୌହାନ୍ ବଂଶର ଜେମା)ଙ୍କୁ ବିବାହ କଲେ । ତା'ର ଦୁଇ ବର୍ଷ ପରେ ତାଙ୍କର ଏକ କନ୍ୟା 'ମାନୀ' ଜନ୍ମ ହେଲା । ପରେ ମାନୀଦେବୀ ସିଂହଭୂମି ଇଚ୍ଛାଗଡ ରାଜବଂଶର ବିଦ୍ୟାଧର ସିଂହଦେଓଙ୍କୁ ବିବାହ କରିଥିଲେ ।

ବିକ୍ରମଦେବ ବର୍ମା ତାଙ୍କର ବାଲ୍ୟ ଓ ଯୌବନ କାଳ ବିଶାଖାପାଟଣାରେ କଟାଇ ଥିଲେ । ସେଠାରେ ସେ ତେଲୁଗୁ ଭାଷାର ବହୁ ପୁସ୍ତକ ରଚନା କରି ସମ୍ମାନିତ ହେଲେ । ସେଥିମଧ୍ୟରୁ କେତେଖଣ୍ଡ ତେଲୁଗୁ ଭାଷାର ପୁସ୍ତକ ପାଠ୍ୟପୁସ୍ତକ ରୂପେ ନିର୍ବାଚିତ ହୋଇ ଆନ୍ଧ୍ର ବିଶ୍ୱବିଦ୍ୟାଳୟରେ ପ୍ରଚଳନ ହେଲା । ଖ୍ରୀ ୧୮୮୬ରେ ସେ ସେଠାରେ ଓଡ଼ିଆ ଭାଷାଭାଷୀ ଲୋକମାନଙ୍କୁ ନେଇ 'ଓଡ଼ିଆ ସମାଜ' ନାମକ ଏକ ଅନୁଷ୍ଠାନ ଗଢିଲେ ଓ ତାରି ମାଧ୍ୟମରେ ପ୍ରବାସୀ ଓଡ଼ିଆମାନଙ୍କର ସେ ଥିଲେ ଦିଗ୍‌ଦର୍ଶକ, ଓଡ଼ିଆ ସଂସ୍କୃତିର ରକ୍ଷକ ଓ ତତ୍ତ୍ୱାବଧାରକ । ତାଙ୍କର ପ୍ରଚଣ୍ଡ ସାଙ୍ଗଠନିକ ଶକ୍ତି ବିଚ୍ଛିନ୍ନାଞ୍ଚଳର ଓଡ଼ିଆମାନଙ୍କୁ ଗୋଟିଏ ସୂତ୍ରରେ ବାନ୍ଧି ରଖିଲା ବହୁବର୍ଷ ଧରି ।

ସେ ବିଶାଖାପାଟଣାରେ'ଜଗନ୍ମିତ୍ର ହଲ' ନାମକ ଏକ ରଙ୍ଗମଞ୍ଚକୁ ବିପୁଳ ଟଙ୍କା ଦାନ କରି ନବୀକରଣ କଲେ । ତାର ତତ୍ତ୍ୱାବଧାରକ ଜଗନ୍ମିତ୍ର ସମାଜର ସଭାପତି ରହିଲେ । ସେହି ରଙ୍ଗମଞ୍ଚରେ ବହୁ ତେଲୁଗୁ ନାଟକ ପରିବେଶିତ ହୁଏ । ବିକ୍ରମ ଦେବବର୍ମା ପ୍ରଥମେ ସେଠାରେ ଗୋଟିଏ ଓଡ଼ିଆ ଦଳ ଗଠନ କରି ଓଡ଼ିଆ ନାଟକର ଅଭିନୟ ଆରମ୍ଭ କଲେ । ତାଙ୍କର ପ୍ରଥମ ଓଡ଼ିଆ ନାଟକ 'ସଙ୍ଗୀତ ଶ୍ରୀରାଧାମାଧବ' ଲେଖାଟିକୁ ସେହି ରଙ୍ଗମଞ୍ଚରେ ଅଭିନୟ କରାଇଲେ । ସେଥିରେ ଶ୍ରୀରାଧାଙ୍କ ମାନଭଞ୍ଜନ ବୃତ୍ତାନ୍ତ ଓ ସଂସ୍କୃତ ଭାଷାରେ କଥୋପକଥନ ନାଟକର ବିଶେଷତ୍ୱ । ନାଟକର ସଫଳ ଅଭିନୟ ଦେଖି ଓଡ଼ିଆ ଓ ଅଣଓଡ଼ିଆ ସମସ୍ତଙ୍କର ଭୁରି ଭୁରି ପ୍ରଶଂସା ହେବାରୁ ଏହା ପୁନଃ ପୁନଃ ଅଭିନୀତ ହୋଇ ସୁପ୍ରତିଷ୍ଠା ଲାଭ କରିଥିଲା ।

ସେ ବ୍ୟାସକବି ଫକୀର ମୋହନ ଓ କବିବର ରାଧାନାଥ ରାୟଙ୍କର ସାହିତ୍ୟିକ ବନ୍ଧୁ ଥିଲେ । ସେହି ଜଗନ୍ମିତ୍ର ହଲରେ ତାଙ୍କ ଲିଖିତ ତେଲୁଗୁ ନାଟକ 'ଶ୍ରୀନିବାସ କଲ୍ୟାଣମ୍', 'କୃଷ୍ଣାର୍ଜୁନ ଚରିତମ୍' ଓ 'ମାନବତୀ ଚରିତମ୍' ଅଭିନୀତ ହୋଇ ଉଚ୍ଚ ପ୍ରଶଂସା

ଲାଭ କଲା । ସେଠାରେ ସେ ଏକ 'ଶ୍ରୀରାମଲୀଳା' ଅନୁଷ୍ଠାନ ଗଢି ରାମଚନ୍ଦ୍ରଙ୍କ ଜନ୍ମଠାରୁ ରାବଣର ମୃତ୍ୟୁ ପର୍ଯ୍ୟନ୍ତ ନାଟକ 'ଶ୍ରୀରାମଲୀଳା' ଅଭିନୀତ କଲେ । ବିଶାଖାପାଟଣା ଓଡ଼ିଆ ସମାଜ ଦ୍ୱାରା ବହୁ ଗଠନମୂଳକ କାର୍ଯ୍ୟ ହେଲା, ଯାହାଦ୍ୱାରା ସେ ଅଞ୍ଚଳର ଓଡ଼ିଆମାନଙ୍କର ପ୍ରାଣରେ ଏକ ନୂତନ ପ୍ରେରଣା ଓ ସ୍ପନ୍ଦନ ଜାଗ୍ରତ ହେଲା । ଓଡ଼ିଆ ଭାଷା ଓ ଓଡ଼ିଆ ଦେଶ ମିଶ୍ରଣରେ ଏହି ଓଡ଼ିଆ ସମାଜ ବିଶେଷ ଭୂମିକା ଗ୍ରହଣ କଲା, ସରକାରଙ୍କ ଜିଲ୍ଲା ବୋର୍ଡ ମ୍ୟୁନିସିପାଲିଟି ଓ ଅନ୍ୟାନ୍ୟ ହାକିମମାନଙ୍କୁ ସେଠାକାର ଓଡ଼ିଆମାନଙ୍କର ଅଭାବ ଅସୁବିଧା ଦୂର କରିବା ପାଇଁ ସେ ଯାହା ଯାହା କରିଛନ୍ତି ଓ ଲେଖିଯାଇଛନ୍ତି ତାହାସବୁ ତାଙ୍କର ଦେଶସେବା ଓ ସ୍ୱଜାତି ପ୍ରୀତିର ଏକ ନିଖୁଣ ଦସ୍ତାବିଜ । ତାଙ୍କର ଏହିପରି ଜନହିତକର କାର୍ଯ୍ୟର ସ୍ୱୀକୃତି ସ୍ୱରୂପ ବ୍ରିଟିଶ ସରକାର ତାଙ୍କୁ ଖ୍ରୀ ୧୯୧୧ ଡିସେମ୍ବର ୧୨ ତାରିଖରେ ଏକ ସନନ୍ଦ ମାନ୍ଦ୍ରାଜ ସରକାରଙ୍କ ମୁଖ୍ୟ ଶାସନ ସଚିବ ମିଷ୍ଟର ଏ. ଷ୍ଟିଓ୍ୱାର୍ଟଙ୍କ ସ୍ୱାକ୍ଷରରେ ପ୍ରଦତ୍ତ ହୋଇଛି । ଉକ୍ତ ସନନ୍ଦରେ ଭାରତର ସମ୍ରାଟ ପଞ୍ଚମ ଜର୍ଜଙ୍କ ଦରବାର, ଦିଲ୍ଲୀରେ ରାଜ୍ୟାଭିଷେକ ସମୟରେ ବିକ୍ରମ ଦେଓବର୍ମାଠାରୁ ପି. କୃଷ୍ଣଦେଓ ଗାରୁଙ୍କୁ ଉପାଧି ପତ୍ର ଦିଆଗଲା ସ୍ୱାଃ ଏ. ଷ୍ଟିଓ୍ୱାର୍ଟ ।

ବିକ୍ରମଦେବ ବର୍ମା ସମ୍ମାନଜନକ ଅନୁଷ୍ଠାନ ଉତ୍କଳ ସମ୍ମିଳନୀର ଜଣେ ଆଜୀବନ ସଦସ୍ୟ । ୧୯୧୪ରେ ପାରଳାଖେମୁଣ୍ଡିଠାରେ ଅନୁଷ୍ଠିତ ତାର ଦଶମ ଅଧିବେଶନରେ ସେ ସଭାପତିତ୍ୱ କରିଥିଲେ । ପ୍ରାକୃତିକ ଓଡ଼ିଶାର ବାସ୍ତବଚିତ୍ର ପ୍ରଦାନ କରି ସେ ତାଙ୍କ ଭାଷଣରେ ଓଡ଼ିଆଙ୍କର ରାଜନୈତିକ, ଶାସନଗତ, ଶିକ୍ଷା ବିଶେଷତଃ ନାରୀଶିକ୍ଷା, ସ୍ୱାସ୍ଥ୍ୟ, ଶିଳ୍ପ ଓ ପ୍ରଥମ ବିଶ୍ୱଯୁଦ୍ଧ କାଳୀନ ସମସ୍ୟା ଓ ତାର ସମାଧାନ ଦିଗପ୍ରତି ଆଲୋକପାତ କରିଥିଲେ । ବିକ୍ରମଦେବ ବର୍ମା ଓଡ଼ିଆ ଭାଷା-ଭାଷୀ ଲୋକଙ୍କର ଏକ ସ୍ୱତନ୍ତ୍ର ଓଡ଼ିଆ ପ୍ରଦେଶ ଗଠନ ପାଇଁ ନିଜେ ଫଲଡଫ କମିଟି ଓ ଓଡନେଲ କମିଟି ଆଗରେ ସାକ୍ଷ୍ୟ ଦେଇଥିଲେ । ଖ୍ରୀ ୧୯୨୮ରେ ସାଇମନ କମିଶନ ଭାରତ ଭ୍ରମଣ ଆସିଲା ପରେ ସେମାନଙ୍କ ବିରୁଦ୍ଧରେ ସେ ପ୍ରବଳ ପ୍ରତିକ୍ରିୟା ପ୍ରକାଶ କରି କହିଲେ ଯେ, ଯେପର୍ଯ୍ୟନ୍ତ ଓଡ଼ିଆମାନଙ୍କ ପାଇଁ ସ୍ୱତନ୍ତ୍ର ପ୍ରଦେଶ ଗଠନ କରି ବିଶାଖାପାଟଣା ଏଜେନ୍ସି ସହିତ ଜୟପୁର (କୋରାପୁଟ), ପାରଳାଖେମୁଣ୍ଡିକୁ ସେଥିରେ ସାମିଲ କରାନଯାଇଛି, ସେ ପର୍ଯ୍ୟନ୍ତ କମିଶନ ପ୍ରସ୍ତାବକୁ ଗ୍ରହଣ କରାଯିବ ନାହିଁ । ୧୯୩୦ ମସିହା ଜାନୁଆରୀ ୧୫ ତାରିଖରେ 'ମାନ୍ଦ୍ରାଜ ଓଡ଼ିଆ ଓ ସାଇମନ କମିଶନ' ଶିରୋନାମାରେ ଏକ ଇଂରାଜୀ ପ୍ରଚାର ପୁସ୍ତିକା ମୁଦ୍ରିତ କରି ସେ ବାଣ୍ଟିଥିଲେ । ଏହାଦ୍ୱାରା ଓଡ଼ିଆ ଓ ଅଣଓଡ଼ିଆମାନେ ଓଡ଼ିଶା ବା ଓଡ଼ିଆ ପ୍ରଦେଶ ଗଠନ ସହ ତାର ବାସ୍ତବ ସମସ୍ୟା କ'ଣ ତାହା ଉପଲବ୍ଧ କଲେ । ଜୟପୁର ମହାରାଜା ଚତୁର୍ଥ ରାମଚନ୍ଦ୍ର ଦେବ (ଖ୍ରୀ ୧୯୨୦-୧୯୩୧) ତୀର୍ଥ ଭ୍ରମଣରେ ଯାଇ ପବିତ୍ର ପ୍ରୟୋଗ (ଆହ୍ଲାବାଦ)ଠାରେ ୧୯୩୧ ମସିହା ଫେବୃଆରୀ ୨୦ ଦିନ ତାଙ୍କର ମହାପ୍ରୟାଣ ଘଟିଲା । ସେ ନିଃସନ୍ତାନ ଥିଲେ । ତାଙ୍କ ମୃତ୍ୟୁ ପରେ ଏ ରାଜ୍ୟର ରାଜା କିଏ ହେବ ସେ ବିଷୟରେ ବ୍ରିଟିଶ ସରକାର ଆଲୋଚନା କରି ଖ୍ରୀ ୧୯୩୧ ଜୁନ୍‌ମାସ ପାଞ୍ଚ ତାରିଖରେ ଜୟପୁର ରାଜବଂଶର ଶେଷ ଦାୟାଦ ରୂପେ ବିକ୍ରମଦେବ ବର୍ମାଙ୍କୁ ଉପଯୁକ୍ତ ଉତ୍ତରାଧିକାରୀ ରୂପେ ମନୋନୀତ କଲେ । ସେ ୧୯୩୧ଜୁନ୍ ପାଞ୍ଚ ତାରିଖ ଦିନ ମହାରାଜା ବିକ୍ରମଦେବ ବର୍ମା ରୂପେ ଜୟପୁର ରାଜସିଂହାସନରେ ଅଭିଷିକ୍ତ ହେଲେ । ସେ ସର୍ବ ପ୍ରଥମେ ରାଜ୍ୟର ତଥା ପ୍ରଜାମାନଙ୍କର ଅଭାବ ଅସୁବିଧା ପ୍ରତି ଦୃଷ୍ଟି ଦେଲେ । ସେ ପ୍ରଜାମାନଙ୍କର ହିତ ଦୃଷ୍ଟିରୁ କେତେକ କଠୋର ଆଇନକୁ ସରଳ କରିଥିଲେ ଓ କେତେକ କାର୍ଯ୍ୟର ଧାରା ପରିବର୍ତ୍ତନ କରି ରାଜ୍ୟ ଶାସନର ସଂସ୍କାର ଆଣିଲେ । ପ୍ରଜାପୀଡା ଦାୟକ କେତେକ ନିୟମ ଏକାବେଳକେ ଉଠାଇଦେଲେ ।

ଖ୍ରୀ ୧୯୩୨ରେ ଭାରତ ସରକାର ସାର୍ ଓଡନେଲଙ୍କ ଅଧ୍ୟକ୍ଷତାରେ ସୀମା କମିଶନ ବସାଇ ଓଡ଼ିଆ ଭାଷା-ଭାଷୀ ଅଞ୍ଚଳକୁ ଏକତ୍ର ମିଶାଇବାକୁ ଯୋଜନା କଲେ । ବିକ୍ରମଦେବ ବର୍ମା ବିଶାଖାପାଟଣା ଏଜେନ୍ସି ଅଞ୍ଚଳ ସହ ଜୟପୁର ଜମିଦାରୀକୁ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶରେ ମିଶାଇବାକୁ ଦୃଢ ଦାବି କଲେ । ଏହାର ସୁଫଳ ମିଳିଲା । ଓଡ଼ିଆମାନଙ୍କ ପାଇଁ ୧୯୩୬ ମସିହା ଏପ୍ରିଲ ପହିଲାରେ 'ଓଡ଼ିଶା ପ୍ରଦେଶ' ଗଠିତ ହୋଇ ଏଥିରେ ଜୟପୁର ସାମିଲ ହେଲା । ଆଇ.ସି.ଏସ୍. ଅଫିସର ଆର.ସି.ଏସ୍.ବେଲ୍ କୋରାପୁଟ ଜିଲ୍ଲାର ପ୍ରଥମ କଲେକ୍ଟର ହେଲେ । ମହାରାଜା ବିକ୍ରମଦେବ ବର୍ମାଙ୍କ ରାଜସଭା ଥିଲା ସାହିତ୍ୟାଲୋଚନାରେ ସତତ ମୁଖରିତ୍ ଯେପରି ଏହା ଏକ ପଣ୍ଡିତମାନଙ୍କ ସଭା । ଓଡ଼ିଶା ଓ ମାନ୍ଦ୍ରାଜ (ଆନ୍ଧ୍ର)ର ବହୁ ପଣ୍ଡିତ ଜ୍ଞାନୀ, ଗୁଣୀ, ସାରସ୍ୱତ ବ୍ୟକ୍ତିମାନେ ମହାରାଜାଙ୍କ ନିକଟରେ ଉପସ୍ଥିତ ହେଉଥିଲେ । ତାଙ୍କ ଦରବାର ଉଜ୍ଜୟିନୀ ବିଦ୍ୟାନଗରୀର ଭ୍ରମ ସୃଷ୍ଟି କରୁଥିଲା । ରାଜକବି ବିକ୍ରମଦେବ ବର୍ମାଙ୍କର ତେଲୁଗୁ, ଓଡ଼ିଆ ଓ ହିନ୍ଦୀ ସାହିତ୍ୟରେ ଅସାଧାରଣ ପାଣ୍ଡିତ୍ୟ ଥିଲା । ତାଙ୍କର ଏହି ଅଲୌକିକ ସାହିତ୍ୟିକ ପ୍ରତିଭା ଓ ପାଣ୍ଡିତ୍ୟରେ ମୁଗ୍ଧ ହୋଇ ଆନ୍ଧ୍ର ଭାରତୀତୀର୍ଥ ଗବେଷଣା ବିଶ୍ୱବିଦ୍ୟାଳୟ ତାଙ୍କୁ ସମ୍ମାନଜନକ 'ଡି.ଲିଟ' ତଥା ସାହିତ୍ୟ ସମ୍ରାଟ ଉପାଧି ୧୯୩୩ ମସିହା ମେ' ମାସ ପାଞ୍ଚ ତାରିଖ ଦିନ ପ୍ରଦାନ

କରିଥିଲା । ବିକ୍ରମଦେବ ବର୍ମା ନିରବଚ୍ଛିନ୍ନଭାବେ ସାରସ୍ୱତ ସାଧନାରେ ବ୍ରତୀ ଥିଲେ । ସେ ନିଜେ ଘରେ ପଢାପଢି କରି ସଂସ୍କୃତ, ତେଲୁଗୁ, ଓଡ଼ିଆ, ହିନ୍ଦୀ ଓ ଇଂରାଜୀରେ ଅପୂର୍ବ ପାରଦର୍ଶିତା ଲାଭ କରିଥିଲେ । ତତ୍କାଳୀନ ସମ୍ବାଦପତ୍ର ନବଭାରତ ସହକାର, ନବୀନ, ଶିଶିର, ଦୈନିକ ଆଶା, ପ୍ରଦୀପ, ମୁକୁର, ଉତ୍କଳ ସାହିତ୍ୟ, ସମ୍ବଲପୁର ହିତୈଷିଣୀ ପ୍ରଭୃତିର ସେ ଜଣେ ମୁଖ୍ୟ ଲେଖକ ଥିଲେ । ଓଡ଼ିଆ ଭାଷାରେ ତାଙ୍କର ପ୍ରଥମ ଲେଖାହେଲା– 'ଭାଗବଦ୍ ଗୀତା ମାହାତ୍ମ୍ୟ' । ଏହା ନବାକ୍ଷରୀ ବୃତ୍ତରେ ଭଗବତ ଗୀତାର ଉତ୍କଳ ପଦ୍ୟାନୁବାଦ । କୈଶୋର ବୟସରେ ଆଦିରସର କବିତା 'ସରସ ଗୀତାବଳୀ' ରଚନା କରି ସେ ପ୍ରାଚୀନ କବି ଭଞ୍ଜ ପ୍ରଭୃତିଙ୍କ ପଦାଙ୍କ ଅନୁସରଣ କରିଥିଲେ । ଶ୍ରୀକୃଷ୍ଣ ପଞ୍ଚରତ୍ନ ସ୍ତୋତ୍ର, ଶ୍ରୀରାଧିକାଧବ ପଞ୍ଚରତ୍ନସ୍ତୋତ୍ର, ଶ୍ରୀକୃପାମ୍ଭୋଧଷ୍ଟକଂ, ଶ୍ରୀସିଂହିତାଷ୍ଟକଂ, ଶ୍ରୀହରିକବଚ, ଗୌରୀସ୍ତବ, ନବଗ୍ରହ ସଂଗ୍ରହ ସ୍ତବ, ଶ୍ରୀରାମ ଚରିତ ଗୀତ, ଶ୍ରୀକୃଷ୍ଣ ନକ୍ଷତ୍ରମାଳା, ଶ୍ରୀଧର ନବରତ୍ନମାଳା, ଗୋପାଳ, ନବଗ୍ରହମାଳା, ଶ୍ରୀଚୈତନ୍ୟ ଶ୍ରେଷ୍ଠତ୍ୱ ଓ ଶ୍ରୀକେଶବ ଚଉତିଶା ପ୍ରଭୃତି ବହୁ ଉପାଦେୟ ଜଣାଣ ସେ ଲେଖିଯାଇଛନ୍ତି । ସଂସ୍କୃତ ଭାଷାରେ ରଚିତ ସ୍ତୋତ୍ର ଅଷ୍ଟକ, କବଚ ଓ ବିବିଧ ଶ୍ଳୋକଗୁଡିକ ତାଙ୍କର ସଂସ୍କୃତ ଭାଷାରେ ଅଗାଧ ପାଣ୍ଡିତ୍ୟର ପ୍ରମାଣ ଦିଏ ।

ତାଙ୍କର ପ୍ରଥମ ଓଡ଼ିଆ ନାଟକ 'ସଙ୍ଗୀତ ଶ୍ରୀମାଧବ' ନାଟକ ପୂର୍ବରୁ ଆଲୋଚିତ ହୋଇଛି । ଏତଦ୍‌ବ୍ୟତୀତ 'ବୁଦ୍ଧ ଚରିତ', ଉତ୍କଳ କୁନ୍ଦମାଳା ନାଟକ ଦୁଇଟି ତାଙ୍କର ପରବର୍ତ୍ତୀ ସୃଷ୍ଟି । ରୂପକ ଦଶବିଧ ଓ ଉପରୂପକ ଅଷ୍ଟାଦଶବିଧ ବୋଲି ତାଙ୍କର ନାଟ୍ୟକଳା (ମନସ୍ୱୀ ବିକ୍ରମଦେବ ବର୍ମା– ନିରାକାର ମହାଳିକ ପୃ ୮୨) ବିକ୍ରମ ଦେବଙ୍କର ପ୍ରକୃତ ନାଟ୍ୟକାରର ପରିଚୟ ପ୍ରଦାନ କରେ । ତାଙ୍କ ରଚିତ ତେଲୁଗୁ ଭାଷାରେ ନାଟକ ଶ୍ରୀନିବାସ କଲ୍ୟାଣମ୍, କୃଷ୍ଣାର୍ଜ୍ଜୁନ ଚରିତମ୍, ମାନବତୀ ଚରିତମ୍ ପୂର୍ବରୁ ଆଲୋଚିତ ହୋଇଛି । ଶ୍ରୀ ଗୋବିନ୍ଦମଞ୍ଜରିକା ବଳୀ– ଏହା ଶଙ୍କରାଚାର୍ଯ୍ୟଙ୍କର ମୋହମୁଦ୍‌ଗର ଗ୍ରନ୍ଥର ଓଡ଼ିଆ ଓ ତେଲୁଗୁ ଭାଷାର ଦୁଇଗ୍ରନ୍ଥ । ସେହିପରି ତାଙ୍କର ଗଦ୍ୟ ସାହିତ୍ୟରେ କ୍ଷୁଦ୍ରଗଳ୍ପ ମାଲୋଚରିତ୍ର, ଗୋରୀର ଘରକରଣି ଓ ଗୁଣବତୀ ପତ୍ନୀ ପ୍ରଭୃତି ଗଳ୍ପଗୁଡିକ ବର୍ଣ୍ଣନାଧର୍ମୀ ଉପଦେଶାତ୍ମକ ଏକ ଏକ ସାର୍ଥକ ସୃଷ୍ଟି । ତାଙ୍କର ବହୁ ପ୍ରବନ୍ଧ ମଧ୍ୟ ପ୍ରକାଶିତ ହୋଇଛି । ତୁଳସୀ ଦାସଙ୍କ ରାମଚରିତ ମାନସର ଅନୁବାଦ ଗ୍ରନ୍ଥ ତୁଳସୀ ବିକ୍ରମ ରାମାୟଣ ଅସମ୍ପୂର୍ଣ୍ଣ ରହିଛି । ଯଜୁର୍ବେଦୀୟ ସନ୍ଧ୍ୟାପ୍ରୟୋଗ, ଦ୍ୱିଜାଚମନବିଧାନଂ, କାଦମ୍ବରୀ ସାରକଥା, ସରସ ଗୀତାବଳୀ, ଭକ୍ତିରତ୍ନମାଳିକାର ଶ୍ଳୋକ ଓ କବିତା, ଲୋକକ୍ତିଗୀତି, ଋତୁବର୍ଣ୍ଣନା ପ୍ରଭୃତି ରଚନାମାନ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ହୋଇଛି । ବିକ୍ରମଦେବ ବର୍ମା କଳା, ସାହିତ୍ୟ, ସଂସ୍କୃତି ଓ ଶିକ୍ଷା କ୍ଷେତ୍ରରେ ଜଣେ ବିଶିଷ୍ଟ ବଦାନ୍ୟ ବ୍ୟକ୍ତି ଥିଲେ । ସାର୍ବଜନୀନ ଶିକ୍ଷା ଓ ସାହିତ୍ୟର ଉନ୍ନତି ପାଇଁ ୱାଲଟିୟରେ ଅବସ୍ଥିତ ଆନ୍ଧ୍ର ବିଶ୍ୱବିଦ୍ୟାଳୟକୁ ସେ ବାର୍ଷିକ ଏକ ଲକ୍ଷ ଟଙ୍କା ଦେଉଥିଲେ । ଏଭଳି ଦାନ ସେତେବେଳେ ଓଡ଼ିଶାରେ ଦୁର୍ଲଭ ଥିଲା । ବିଶାଖାପାଟଣାରେ ଅବସ୍ଥିତ ନାରୀ ଚିକିତ୍ସାଳୟ, ଶିଳ୍ପ ମିଉଜିୟମ୍ ଓ ସ୍ଥାୟୀ ରଙ୍ଗମଞ୍ଚ ତାଙ୍କ ଦାନରେ ନିର୍ମିତ ଅକ୍ଷୟ କୀର୍ତ୍ତି । ତାଙ୍କର ବିଭିନ୍ନ ଅନୁଷ୍ଠାନକୁ ଦାନ– ନବରଙ୍ଗପୁର ପାଠାଗାର ନିର୍ମାଣ ଏକ ହଜାର, ବାଣପୁର ହାଇସ୍କୁଲକୁ ଦୁଇହଜାର ଡାକ୍ତର ମୁଞ୍ଜେଙ୍କ ହିନ୍ଦୁସୈନିକ ଶିକ୍ଷାଶାଳା ପାଇଁ ତିନିହଜାର ଏବଂ ବିଶ୍ୱକବି ରବୀନ୍ଦ୍ରନାଥଙ୍କ ଶାନ୍ତିନିକେତନକୁ ପାଞ୍ଚହଜାର ପ୍ରଭୃତି ଦାନ ଉଲ୍ଲେଖଯୋଗ୍ୟ । ତାଙ୍କର ପାଞ୍ଚହଜାର ଟଙ୍କା ଦାନରେ ପଣ୍ଡିତ ନୀଳକଣ୍ଠ ଦାଶ ପ୍ରତିଷ୍ଠା କରିଥିଲେ ନବଭାରତ ପ୍ରେସ ଓ ସାହିତ୍ୟ ପତ୍ରିକା । ୧୯୩୪ ଜୁନ ବେଳକୁ 'ପୂର୍ଣ୍ଣଚନ୍ଦ୍ର ଭାଷାକୋଷ'ର ୪ର୍ଥ ଭାଗର ପ୍ରକାଶନ ଭାର ସେ ନିଜେ ସମ୍ପୂର୍ଣ୍ଣ ବହନ କରିଥିଲେ ଏବଂ ତାର ୫ମ ଭାଗର ପ୍ରକାଶନ ପାଇଁ ଗୋପାଳ ପ୍ରହରାଜଙ୍କୁ ୧୦ ହଜାର ଟଙ୍କା ଦାନ କରିଥିଲେ । ଡାକ୍ତରୀ ଶିକ୍ଷା ପାଇଁ କଟକ ଶ୍ରୀରାମଚନ୍ଦ୍ର ମେଡିକାଲକୁ ଏକ ଲକ୍ଷ ତିରିଶ ହଜାର ଟଙ୍କା ଅକୁଣ୍ଠ ଚିତ୍ତରେ ସେ ଦାନ କରିଥିଲେ । ସେ ବୈକୁଣ୍ଠ ନାଥ ପଟ୍ଟନାୟକଙ୍କ ରଚନାବଳୀ ସମେତ ବହୁ ଦୁଃସ୍ଥ ସାହିତ୍ୟିକମାନଙ୍କୁ ମାସିକ ଭତ୍ତା ପ୍ରଦାନ କରୁଥିଲେ । ସେ ୧୯୪୬ ମସିହାରେ ଜୟପୁରଠାରେ ଶ୍ରୀବିକ୍ରମ ସ୍କୁଲ ଅଫ୍ ଆର୍ଟ ଓ କ୍ରାଫ୍ଟ ଓ ୧୯୪୭ ଜୁଲାଇ ପହିଲାରେ ୪୯ ଜଣ ଛାତ୍ରଙ୍କୁ ନେଇ ଜୟପୁର କଲେଜ ଆରମ୍ଭ କଲେ । ୧୯୩୫ରେ ବିକ୍ରମଦେବଙ୍କ ପୁତ୍ର ସନ୍ତାନ ନଥିବାରୁ ତାଙ୍କ ଜ୍ଞାଇଁ ବିଦ୍ୟାଧର ସିଂହଦେଓଙ୍କ କନିଷ୍ଠପୁତ୍ର ରାମକୃଷ୍ଣ ଦେବଙ୍କୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କଲେ । ସେ ଅଶୀବର୍ଷ ବୟସରେ ୧୯୪୯ର ଉତ୍କଳ ବିଶ୍ୱବିଦ୍ୟାଳୟ ସମାବର୍ତ୍ତନ ଉତ୍ସବରେ ଏକ ସାରଗର୍ଭକ ଭାଷଣ ପ୍ରଦାନ କଲେ । ଏହାଥିଲା ତାଙ୍କ ଜୀବନର ଶେଷ ଭାଷଣ । ଖ୍ରୀ ୧୯୫୧ ଏପ୍ରିଲ ୧୪ ତାରିଖରେ ସେ ଇହଲୀଳା ସମ୍ବରଣ କଲେ । ଓଡ଼ିଶା ତାର ଜଣେ ଭାରତୀୟ ସମନ୍ୱୟ ସଂସ୍କୃତି ସମ୍ପନ୍ନ ଜାତୀୟ ସମ୍ପତ୍ତିକୁ ଚିରଦିନ ପାଇଁ ହରାଇଲା । କେବଳ ତା'ର ସ୍ମୃତି ରହିଗଲା ।

ଏନ୍–୧/୮୨, ଆଇଆରସି ଭିଲେଜ,
ଭୁବନେଶ୍ୱର–୧୫

# ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନରେ ମଧୁବାବୁଙ୍କ ଭୂମିକା

ସ୍ନେହଲତା ଆଚାର୍ଯ୍ୟ

ଯେଉଁ ସମୟରେ ଓଡ଼ିଆ ଜାତି ତା'ର ସ୍ୱଧର୍ମ, ସ୍ୱାଭିମାନ ଭୁଲିଯାଇଥିଲା, ଯେଉଁ ସମୟରେ ଆଶା କରାଯାଉଥିଲା ଯେ, ଓଡ଼ିଆ ଜାତିର ଭାଷା, ସାହିତ୍ୟ, ସଂସ୍କୃତି ଆଦି ପୂରାପୂରି ନିଶ୍ଚିହ୍ନ ହୋଇଯିବ, ଉତ୍କଳର ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ଭାଗ୍ୟାକାଶ ଯେତେବେଳେ ଘୋର ତିମିରାଚ୍ଛନ୍ନ, ଠିକ୍ ସେହିଭଳି ଏକ ଘଡିସନ୍ଧି ମୁହୂର୍ତ୍ତରେ ୧୯୪୮ ଏପ୍ରିଲ ୨୮ ତାରିଖ କଟକ ଜିଲ୍ଲାର ସତ୍ୟଭାମାପୁର ଗ୍ରାମରେ ପିତା ଚୌଧୁରୀ ରଘୁନାଥ ଦାସ ଓ ମାତା ପାର୍ବତୀ ଦେବୀଙ୍କ କୋଳମଣ୍ଡନ କରି ଧ୍ରୁବତାରା ରୂପେ ଉଇଁଲେ ଓଡ଼ିଶାର ପ୍ରବାଦ ପୁରୁଷ, ଓଡ଼ିଆ ସ୍ୱାଭିମାନର ମୂର୍ତ୍ତିମନ୍ତ ପ୍ରତୀକ, ଉତ୍କଳଗୌରବ କୁଳବୃଦ୍ଧ ମଧୁସୂଦନ ଦାସ । ପିଲାଟି ଦିନରୁ ମାଙ୍କଠାରୁ ଶିଖିଥିବା 'ଆଲୋ ସଖି, ଆପଣା ମହତ ଆପେ ରଖି' ଆଦର୍ଶକୁ ପାଥେୟ କରି ଜୀବନରେ ଉତ୍ତରୋତ୍ତର ଉନ୍ନତି କରିଥିଲେ ।

ଉତ୍କଳର ଐତିହ୍ୟ ଓ ପରମ୍ପରା ଭାରତ କାହିଁକି ସାରା ଜଗତରେ ଆଲୋଡନ ସୃଷ୍ଟି କରିଥିଲା । ଧର୍ମ, ରାଜନୀତି, ଅର୍ଥନୀତି ଓ ସାମାଜିକ କ୍ଷେତ୍ରରେ ଚରମ ଉତ୍କର୍ଷତା ଲାଭ କରିଥିଲା । ଓଡ଼ିଶା ଥିଲା ବୀରଭୂମି । ଓଡ଼ିଶାର ପାଇକ ପୁଅର ନାଁ ଶୁଣିଲେ ଦୁର୍ଦ୍ଧର୍ଷ ଇଂରେଜ ଜାତିର ଛାତି ଥରଥର ହେଉଥିଲା । ଉତ୍କଳ ମାତାର ଶ୍ରୀସମୃଦ୍ଧି ନିମନ୍ତେ ପ୍ରତ୍ୟେକ ଓଡ଼ିଆ ପାଖରେ ପ୍ରକାଶ ପାଇଥିଲା ଅସୀମ କର୍ତ୍ତବ୍ୟବୋଧ, ନିଷ୍ଠା ଓ ତ୍ୟାଗ । ପୂର୍ବ ପୁରୁଷଙ୍କ ବୀରତ୍ୱ ଯୋଗୁଁ ଓଡ଼ିଶାର ସୀମା ଗଙ୍ଗାଠାରୁ ଗୋଦାବରୀ ଓ ମହୋଦଧିଠାରୁ ମଧ୍ୟପ୍ରଦେଶ ଯାଏଁ ଏହାର କୀର୍ତ୍ତିରାଜି ସର୍ବତ୍ର ବ୍ୟାପିଥିଲା । ଉତ୍କଳର ଦେବତା ହେଉଛନ୍ତି ଜଗନ୍ନାଥ, ଯେକି ଜଗତର ନାଥ, ଯିଏ ନିଜର ପ୍ରଧାନ ସେବକର ମାନରକ୍ଷା କରିବା ପାଇଁ କାଞ୍ଚି ଅଭିଯାନ କରିଥିଲେ । ଏହି ମାଟିରେ ଅଶୋକ ଚଣ୍ଡାଶୋକରୁ ଧର୍ମାଶୋକରେ ପରିଣତ ହୋଇଥିଲେ । ଠିକ୍ ସେହିପରି ଶିଳ୍ପୀମାନଙ୍କ ଦ୍ୱାରା ଗଢା ଯାଇଥିବା କୋଣାର୍କର ସୂର୍ଯ୍ୟମନ୍ଦିର, ଜଗନ୍ନାଥ ମନ୍ଦିର, ଲିଙ୍ଗରାଜ ମନ୍ଦିର, ରାଜାରାଣୀ ମନ୍ଦିର ଇତ୍ୟାଦି ଉନ୍ନତ କଳା ସ୍ଥାପତ୍ୟର ପରିଚୟ ଦିଏ । କେବଳ ସେତିକି ନୁହେଁ ଓଡ଼ିଶାର ସାଧବ ପୁଅ ଦରିଆ ପାରି ହୋଇ ବାଣିଜ୍ୟ ବ୍ୟବସାୟ କରି ଧନ ରତ୍ନ ବୋହି ଆଣି ଉତ୍କଳ ଜନନୀର ଭଣ୍ଡାରକୁ ଧନଧାନ୍ୟରେ ପୂର୍ଣ୍ଣ କରିଥିଲା । କିନ୍ତୁ ଆଜି କର୍ପୂର ଉଡିଯାଇ କେବଳ କନା ପଡିରହିଛି । ଉତ୍କଳ ଜନନୀର ଆଜି ଛିନ୍ନମସ୍ତା, ଭୂଲୁଣ୍ଠିତା । କାଳର କରାଳ ଗତିରେ ଓ ରାଜ୍ୟ ହେଲା ଶ୍ରୀହୀନ । ୧୮୦୩ରେ ଓଡ଼ିଶା ଇଂରେଜମାନଙ୍କ ଅଧିକାରକୁ ଆସିଯିବା ପରେ ଓଡ଼ିଶାର ଭାଗ୍ୟାକାଶରେ ଘୋର ଦୁର୍ଦ୍ଦିନ ଆସିଗଲା । ବିଦେଶୀମାନଙ୍କର କୂଟନୀତି ଓ କୁଚକ୍ରାନ୍ତ ଯୋଗୁଁ ଓଡ଼ିଶା ଖଣ୍ଡ ବିଖଣ୍ଡିତ ହୋଇଗଲା । ଶାଗୁଣା ମୁର୍ଦ୍ଦାରକୁ ଖଣ୍ଡ ଖଣ୍ଡ କରି ଖାଇଲା ପରି ଓଡ଼ିଶା ଖଣ୍ଡ ବିଖଣ୍ଡିତ ହୋଇ ବଂଗ, ବିହାର, ମାନ୍ଦ୍ରାଜ, ମଧ୍ୟପ୍ରଦେଶ ତଥା ଅନ୍ୟାନ୍ୟ ଗଡଜାତମାନଙ୍କର ଶାସନାଧୀନ ହୋଇ ରହିଲା । ଏହିଭଳି ଅବସ୍ଥାରେ 'ଓଡିଆ ଏକ୍‌ଟା ସ୍ୱତନ୍ତ୍ର ଭାଷାନୟ' ବୋଲି ଆନ୍ଦୋଳନ ଚାଲିଲା । ବେଡି ଉପରେ କୋରଡା ସଦୃଶ ୧୮୬୬ର ନଅଙ୍କ ଦୁର୍ଭିକ୍ଷ ଦ୍ୱାରା ଓଡ଼ିଶାର ମେରୁଦଣ୍ଡ ସମ୍ପୂର୍ଣ୍ଣ ରୂପେ ଦୋହଲି ଗଲା । ବୀରପ୍ରସବୀନୀ ଉତ୍କଳମାତାର ବଂଶଧରମାନେ ଆତ୍ମ ପ୍ରତ୍ୟୟ ହରାଇଲେ । ସେମାନେ ସ୍ୱଧର୍ମ, ସ୍ୱାଭିମାନ ଓ ଐତିହ୍ୟ ଭୁଲିଯାଇ ଜୀବନ୍ମୃତ ଅବସ୍ଥାରେ ପଡି ରହିଲେ । ମଧୁସୂଦନ ଦେଖିଲେ ଏହି ଜାତିର ଶରୀରରେ ନାହିଁ ପ୍ରାଣଶକ୍ତି, ନାହିଁ ତେଜ, ଉଦ୍ୟମ ଓ ଗୌରବବୋଧ । ତାଙ୍କର ଅନ୍ତରାତ୍ମା କାନ୍ଦି ଉଠିଲା । ସେ ଚାହିଁଲେ ଯେ ଯେଉଁ ଜାତି ମୃତବତ ଅବସ୍ଥାରେ ପଡି ରହିଛି, ତାକୁ ପୁନର୍ଜୀବିତ କରିବାକୁ ହେବ । ମନନ ଶକ୍ତିକୁ ଉଜ୍ଜୀବିତ କରିବାକୁ ପଡିବ ଓ ସୁପ୍ତ ଆତ୍ମାକୁ ଉଦ୍‌ବୋଧିତ କରିବାକୁ ପଡିବ । ସେ ସ୍ପଷ୍ଟ ଭାବରେ ହୃଦୟଙ୍ଗମ କଲେ ଯେ ବିଚ୍ଛିନ୍ନ ଉତ୍କଳର ଏକତ୍ରୀକରଣ ବିନା ଓଡ଼ିଶାର ପ୍ରଗତି ଅସମ୍ଭବ । ତେଣୁ ସେ ଓଡ଼ିଶାର ବିଭିନ୍ନ ରାଜା ମହାରାଜା ଓ ବିଶିଷ୍ଟ ବ୍ୟକ୍ତିମାନଙ୍କୁ ନେଇ ଉତ୍କଳ ସମ୍ମିଳନୀରେ ଏକତ୍ରିତ କରି

ସେମାନଙ୍କ ସୁପ୍ତ ଆଶାକୁ ଜାଗ୍ରତ କରାଇ ସେମାନଙ୍କ ଜୀବନ ପ୍ରବାହର ଗତିକୁ ସମ୍ପୂର୍ଣ୍ଣ ରୂପେ ବଦଳାଇ ଦେଇଥିଲେ । ଫଳରେ ସେମାନଙ୍କ ମନରେ ପୁଣି ଆତ୍ମପ୍ରତ୍ୟୟ ଫେରି ଆସିଲା । ଫେରି ଆସିଲା ଶତ ସିଂହର ବଳ । ମଧୁସୂଦନ ନିଜେ ଏହାର ପୃଷ୍ଠପୋଷକ ଭାବରେ ଅଗ୍ରଣୀ ଥିଲେ । ନବ-ଉତ୍କଳର ପ୍ରାଣ-ପ୍ରତିଷ୍ଠାତା ଉତ୍କଳଗୌରବ କୁଳବୃଦ୍ଧ ମଧୁସୂଦନ ବିଚ୍ଛିନ୍ନ ଓଡ଼ିଶାର ଏକତ୍ରୀକରଣ ପାଇଁ ନିଜର ସର୍ବସ୍ୱ ତ୍ୟାଗ କରିଥିଲେ । ଖଣ୍ଡ ବିଖଣ୍ଡିତ ଅଞ୍ଚଳଗୁଡ଼ିକୁ ଏକତ୍ରୀକରଣ କରି ଏକ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ କରିବା ନିମନ୍ତେ ୧୯୦୩ ମସିହାରେ ଉତ୍କଳ ସମ୍ମିଳନୀରେ ଲୋକମାନଙ୍କ ମନରେ ଏକତା ଓ ସିଂହତି ପୂର୍ବକ ଜାତିପ୍ରୀତିରେ ଉତ୍କଳୀୟମାନଙ୍କୁ ଅନୁପ୍ରାଣିତ କରିବା ପାଇଁ ଉଦ୍‌ବୋଧନ ଦେଲେ । ତେଣୁ ତାଙ୍କ ନିଃସୃତ ବାଣୀ ହୋଇଥିଲା-

ଏହି ସମ୍ମିଳନୀ ଜାତିପ୍ରାଣ ସିନ୍ଧୁ, କୋଟି ପ୍ରାଣବିନ୍ଦୁ ଧରେ
ତୋର ପ୍ରାଣ ବିନ୍ଦୁ ମିଶାଇ ଦେ ଭାଇ, ଡେଇଁ ପଡି ସିନ୍ଧୁ ନୀରେ ।

ଓଡ଼ିଆ ସାହିତ୍ୟର ନବଜାଗରଣରେ ମଧୁବାବୁଙ୍କ ଭୂମିକା ମଧ୍ୟ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ମଧୁବାବୁଙ୍କ ରଚିତ କାବ୍ୟକବିତା ପ୍ରତ୍ୟେକ ଓଡ଼ିଆ ପ୍ରାଣରେ ପୂରାଇ ଦେଇଥିଲା ଜାତୀୟତାର ପ୍ରେମ-ବହ୍ନି । ତାଙ୍କ ରଚିତ ଉତ୍କଳ ସନ୍ତାନ ଓ ଜାତି ଇତିହାସ ପ୍ରଭୃତି ସବୁଥିରେ ଜାତୀୟତା ଭାବ ରହିଛି । ମଧୁସୂଦନ ଥିଲେ ସହସ୍ରାବ୍ଦର ପ୍ରଚଣ୍ଡ ସୂର୍ଯ୍ୟ । ସେ ଏକ କୋଟି ସୁସୁପ୍ତ ଓଡ଼ିଆ ଜାତିକୁ ଜାତିପ୍ରେମ ରୂପକ ବହ୍ନି ପ୍ରଜ୍ୱଳିତ କରି ସ୍ୱାର୍ଥମେଧ ଯଜ୍ଞ ଆୟୋଜନ କରି ସ୍ୱାର୍ଥତ୍ୟାଗ କରିବାକୁ ଆହ୍ୱାନ ଦେଇ କହିଲେ-

'ଜାତି ପ୍ରେମ-ବହ୍ନି ପ୍ରଜ୍ୱଳିତ କରି, ସ୍ୱାର୍ଥକୁ ଦିଅ ଆହୂତି
ସ୍ୱାର୍ଥମେଧ ଯଜ୍ଞେ ଚାରିଆଡେ ନାଚ, ଛାତିକୁ ମିଶାଇ ଛାତି ।'

ମଧୁସୂଦନଙ୍କ ସ୍ୱପ୍ନ ଥିଲା ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ଦୁଇଟି ଧାରା ମଧ୍ୟରୁ ମୁଖ୍ୟ ଧାରାଟି ଥିଲା ଓଡ଼ିଆ ଭାଷା ସୁରକ୍ଷା ଆନ୍ଦୋଳନ ଓ ଅନ୍ୟଟି ଥିଲା ଭାଷା ଭିତ୍ତିକ ସ୍ୱତନ୍ତ୍ର ପ୍ରଦେଶ ଗଠନ । ଯାହାର କି ମୁଖ୍ୟ ପୁରୋଧା ଥିଲେ ମଧୁସୂଦନ ଓ କୃଷ୍ଣଚନ୍ଦ୍ର ଗଜପତି । ସେମାନଙ୍କ ସଂଗ୍ରାମ, ଅନବରତ ଉଦ୍ୟମ, ଦିବ୍ୟ ପୁରୁଷ ଗୌରୀଶଙ୍କରଙ୍କ ଭାଷା ଆନ୍ଦୋଳନ ବଳବତ୍ତର କଲା ଓଡ଼ିଆ ଜାତିର ଉତ୍‌ଥାନ, ଓଡ଼ିଆ ଭାଷା ଓ ଲିପିର ସ୍ୱାତନ୍ତ୍ର୍ୟତାକୁ । ୧୮୮୨ ମସିହାରେ ଗଢା ଯାଇଥିବା ଉତ୍କଳ ସୋସାଇଟି ଉତ୍କଳ ସଭାରେ ପରିଣତ ହେଲା । ୧୮୮୫ ମସହିରେ ଜାତୀୟ କଂଗ୍ରେସ ଜନ୍ମଲାଭ କଲା ପରେ ଉତ୍କଳ ସଭା ଏହାର ଶାଖା ରୂପେ କାମ କଲା ଏବଂ ୩.୩.୧୮୬୬ ତାରିଖରେ ନିଆଯାଇଥିବା ନିଷ୍ପତ୍ତି ଯୋଗୁଁ ୧୮୭୦ ମସିହାରେ ମହାଭାରତୀୟ ସ୍ରୋତରେ ଓଡ଼ିଶା ମିଶିଯାଇଥିଲା । ୧୯୦୨ ମସିହାରେ ଅହମ୍ମଦାବାଦ ଅଧିବେଶନରେ କଂଗ୍ରେସ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ ପାଇଁ ପ୍ରସ୍ତାବ ଗ୍ରହଣ କରିବାକୁ ଅରାଜି ହେଲା, ଯାହାକି ମଧୁବାବୁଙ୍କ ସ୍ୱାଭିମାନ ପ୍ରତି ଥିଲା ଏକ ଶକ୍ତ ଧକ୍କା । ଅସହଯୋଗ ଆନ୍ଦୋଳନ ଫଳରେ ଉତ୍କଳ ସଭାର ସ୍ୱତନ୍ତ୍ରତା ଲୋପ ପାଇଲା ସେତେବେଳେ ସାଇମନ୍‌ଙ୍କ ଅଧକ୍ଷତାରେ ଗଠିତ କମିଶନ ଭାରତ ଆସିଥିଲା ଏବଂ ତାକୁ କଳା ପତାକା ପ୍ରଦର୍ଶନ କରାଯାଇ ସାଇମନ୍ କମିଶନ ଫେରିଯାଅ ଭଳି ଧ୍ୱନି ଦିଆଯାଇଥିଲା । ସେହିଭଳି ଏକ ଘଡିସନ୍ଧି ମୁହୂର୍ତ୍ତରେ ମଧୁସୂଦନ ଦାସଙ୍କ ନିର୍ଦ୍ଦେଶରେ ବ୍ରଜସୁନ୍ଦର ଦାସ ଏବଂ ଲକ୍ଷ୍ମୀଧର ମହାନ୍ତିଙ୍କ ନେତୃତ୍ୱରେ ବହୁ ଓଡ଼ିଆ ଭାଇ ଓଡିଶା-ବିହାରର ରାଜଧାନୀ ପାଟନା ଯାଇ ସାଇମନ୍ କମିଶନଙ୍କୁ ସ୍ୱାଗତ ଜଣାଇଲେ ଏବଂ ମଧୁସୂଦନଙ୍କ ଲିଖିତ ଦାବିପତ୍ରକୁ ସାଇମନ୍ କମିଶନ ଗ୍ରହଣ କରିନେଇ କମିଶନର ଅନ୍ୟତମ ସଦସ୍ୟ ସି.ଆର. ଅଟଲିଙ୍କ ଅଧକ୍ଷତାରେ ଗଠିତ ସବ୍‌କମିଟିର ରିପୋର୍ଟ ଅନୁସାରେ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ କରିବାକୁ ସୁପାରିଶ କରାଯାଇଥିଲା । ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ମଧ ବ୍ରିଟିଶ ସରକାରଙ୍କ ସହ ଆଲୋଚନା କରି ଓଡ଼ିଶାକୁ ସ୍ୱତନ୍ତ୍ର ପ୍ରଦେଶର ମାନ୍ୟତା ଦେବା ପାଇଁ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ । ୧୯୩୬ ମସିହା ପର୍ଯ୍ୟନ୍ତ ଏହି ବରପୁତ୍ରମାନଙ୍କର ଅହରହ ସଂଗ୍ରାମ ଫଳରେ ବ୍ରିଟିଶ ସରକାର ୧୯୩୬ ମସିହା ମାର୍ଚ୍ଚ ୩ ତାରିଖରେ ଏକ ଆଦେଶନାମା ପ୍ରକାଶ କଲେ, ଯାହା ଫଳରେ କି ୧୯୩୬ ମସିହା ଏପ୍ରିଲ ପହିଲା ଦିନ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶର ମାନ୍ୟତା ପାଇଲା । ଓଡ଼ିଆ ଜାତିର ସାମଗ୍ରିକ ବିକାଶ କଥା ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଥିଲା ମଧୁବାବୁଙ୍କ ସ୍ୱପ୍ନ । ମାତ୍ର ବିଧିର ବିଡମ୍ବନା, ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ହେବାର ସୁଦିନ ତାଙ୍କ ଭାଗ୍ୟରେ ଜୁଟି ନଥିଲା । ଉତ୍କଳ ପ୍ରଦେଶ ଗଠନର ଦୁଇବର୍ଷ ପୂର୍ବରୁ ୧୯୩୪ ମସିହା ଫେବୃଆରୀ ମାସ ୪ ତାରିଖରେ ଏହି କରିତ୍‌କର୍ମା, ଯୁଗପୁରୁଷ ଶତାବ୍ଦୀର ସୂର୍ଯ୍ୟ, ଓଡ଼ିଶାର ବରପୁତ୍ରଙ୍କର ଜୀବନ ପ୍ରଦୀପ ନିର୍ବାପିତ ହୋଇଗଲା । ଓଡ଼ିଆ ଜାତିର ଉତ୍‌ଥାନ ପାଇଁ ତାଙ୍କର ଏତେ ବ୍ୟାକୁଳତା ଥିଲା ଯେ, ଜୀବନର ଅନ୍ତିମ କାଳରେ ମଧ ସେ କହିଥିଲେ, ମୁଁ ଅକିଞ୍ଚନ ଚାଲିଯାଏ, କିନ୍ତୁ ଓଡିଆ ଜାତି ବଞ୍ଚି ରହିଥାଉ । ବାସ୍ତବିକ୍ ଧନ୍ୟ ତାଙ୍କର ଜାତିପ୍ରୀତି, ସେ ହେଉଛନ୍ତି ପ୍ରକୃତରେ ଉତ୍କଳ ମାତାର ଯୋଗ୍ୟତମ ସନ୍ତାନ ।

ଶିକ୍ଷୟିତ୍ରୀ
ସରକାରୀ ଉଚ୍ଚ ବାଳିକା ବିଦ୍ୟାଳୟ, ଆସିକା

# ଲକ୍ଷ୍ମୀଧର ନାୟକଙ୍କ ଓଡ଼ିଆ ଗଜଲ୍ ଏକ ଆଲୋଚନା

ଡକ୍ଟର ମହମ୍ମଦ ଆୟୁବ୍

ଗଜଲ୍ ଉର୍ଦ୍ଦୁ ଶାୟେରି ଅର୍ଥାତ୍ ଛାନ୍ଦ କବିତାର ସବୁଠାରୁ ବେଶୀ ଲୋକପ୍ରିୟ ଅଂଗ ଅଟେ । ପ୍ରଫେସର ରସିଦ୍ ଅହମଦ୍ ସିଦ୍ଦିକି ଗଜଲ୍‌କୁ ଉର୍ଦ୍ଦୁ ଶାୟେରିର 'ଆବ୍ରୁ' ବା ସମ୍ମାନ ବୋଲି କୁହନ୍ତି । ଗଜଲ୍ ଶବ୍ଦର ଅର୍ଥ ଓଡ଼ିଆ ଅଭିଧାନରେ ଦୃଷ୍ଟିଗୋଚର ହୁଏ ନାହିଁ । କିନ୍ତୁ ହିନ୍ଦୀ ଅଭିଧାନରେ ଗଜଲ୍‌ର ଅର୍ଥ 'ଗୁଫ୍‌ତୁଗୁ' ବା ବାର୍ତ୍ତାଳାପ ବୋଲି ଦର୍ଶାଯାଇଛି । 'ଗୁଫ୍‌ତୁଗୁ'ର ଭାବଗତ ବିଶ୍ଳେଷଣଟି ବେଶ୍ ଦୀର୍ଘ । ନାରୀମାନଙ୍କ ସହ ପ୍ରଣୟ ଚର୍ଚ୍ଚା, ପ୍ରେମିକାର କେଶ, କପାଳ, ଓଠର ହସ, ଆଖିର କଟାକ୍ଷ, ସ୍କନ୍ଧର ଲାବଣ୍ୟ ଏବଂ କଟି ଦେଶର କ୍ଷୀଣତା ସମ୍ପର୍କରେ କଳାତ୍ମକ ବର୍ଣ୍ଣନାକୁ ଏହା ବୁଝାଏ । କିନ୍ତୁ ବଙ୍ଗଳା ଅଭିଧାନରେ ଗଜଲ୍ ଅର୍ଥ ସୁରା, ସାକୀ ଉପରେ ଆଧାରିତ ଶୃଙ୍ଗାର ରସର କବିତାକୁ ବୁଝାଏ । ଉର୍ଦ୍ଦୁରେ ଶାୟେରୀ ଲେଖୁଥିବା କବିମାନେ କିନ୍ତୁ 'ଗଜଲ' ଶବ୍ଦକୁ ଆହୁରି ମାର୍ମିକ ଅର୍ଥରେ ଉପଯୋଗ କରିଥାନ୍ତି । ଯଥା-

'ଅସ୍‌ଗର୍ ଗଜଲ୍ ମେ ଚାହିଏ ୱୋ୍ହମୌଜି ଜିନ୍ଦେଗି
ଯୋ' ହୁସ୍‌ନ୍ ହୈ ବୁତୋମେ, ଯୋ ମସ୍ତି ସରାବ୍‌ମେ ।'

ଏହାକୁ ଲକ୍ଷ୍ମୀଧର ନାୟକ ଓଡିଆ ଅନୁବାଦରେ କହିଛନ୍ତି-

'ଗଜଲ୍ ଗୀତରେ ରହିବା ଉଚିତ୍, ଜୀବନର ବ୍ୟଥା ଖୁସିର ଢେଉ
ପ୍ରତିମାରେ ଯୋଉ ଲାବଣ୍ୟ ଅଛି, ସୁରା ମାଦକତା ଖୁସିର ଢେଉ ।'

କିନ୍ତୁ ଗଜଲ୍ ଉର୍ଦ୍ଦୁ ପଦ୍ୟ ଶୈଳୀ 'କସିଦା'ର ଛବି ଅଟେ । 'କସିଦା' କହିଲେ ଜଣେ ପ୍ରେମିକ, ପ୍ରେମିକା ପ୍ରଶଂସାରେ ଅବା ପ୍ରେମିକା, ପ୍ରେମିକର ପ୍ରଶଂସାରେ ଲିଖିତ କବିତାକୁ କୁହାଯାଏ । କିନ୍ତୁ ସର୍ବୋପରି କାହାରି ପ୍ରଶଂସାରେ ଲିଖିତ କବିତାକୁ 'କସିଦା'ର ଅନ୍ତର୍ଭୁକ୍ତ କରାଯାଇପାରେ । ଏହି 'କସିଦା' ଶୈଳୀରେ ପ୍ରେମର ବର୍ଣ୍ଣନା, ପ୍ରିୟାର ରୂପ ଓ ସୌନ୍ଦର୍ଯ୍ୟ ବର୍ଣ୍ଣନା, ପ୍ରେମର ବିଭିନ୍ନ ଘଟଣାର ବର୍ଣ୍ଣନା ଇତ୍ୟାଦିକୁ ଅନ୍ତର୍ଭୁକ୍ତ କରାଯାଇପାରେ । ଯେତେବେଳେ ଫାର୍ସୀ କବିମାନେ ଆରବୀ ସାହିତ୍ୟର ପ୍ରଭାବରେ ପ୍ରଭାବିତ ହେଲେ, ସେତେବେଳେ 'କସିଦା'ର ପ୍ରଭାବରୁ ବହୁ ପଦ୍ୟାଂଶ ଭିନ୍ନ ଭିନ୍ନ କରି ଏକ ନୂଆ ରୂପରେ ସୃଷ୍ଟି କଲେ । ଯାହାକୁ ଗଜଲ୍ କୁହାଗଲା ।

ଇରାନ୍‌ର କବି 'ରୁଦ୍‌କି' ହେଉଛନ୍ତି ଗଜଲ୍ ଲିଖନର ପ୍ରଥମ ସ୍ରଷ୍ଟା । ସେ ପ୍ରଥମ କରି ଫାର୍ସୀ ଗଜଲ୍ ରଚନାର ଶୁଭାରମ୍ଭ କରିଥିଲେ । ଉର୍ଦ୍ଦୁ ଭାଷାରେ ଗଜଲ୍‌ର ଉତ୍ପତ୍ତି ଦାକ୍ଷିଣାତ୍ୟର ଗୋଲକୋଣ୍ଡା (ହାଇଦ୍ରାବାଦ)ମାଟିରୁ ହୋଇଥିବାର ଜଣାପଡେ । ଗଜଲ୍‌ର ପ୍ରଥମ କବି ବା ଶାୟର୍ ୱଲିଦକ୍‌ନି ଅଟନ୍ତି ବୋଲି ପ୍ରଥମେ ଚିନ୍ତା କରାଯାଇଥିଲା । ପରବର୍ତ୍ତୀ କାଳରେ ଯେତେବେଳେ ସୁଲ୍‌ତାନ୍ କୁଲି କୁତୁବ୍ ଶାହାଙ୍କର ଗ୍ରନ୍ଥ ଆବିଷ୍କୃତ ହେଲା, ସେଥିରେ ଅନେକ ଗଜଲ୍ ରଚନା ହୋଇ ଥିବାର ଦେଖିବାକୁ ମିଳିଲା । ୧୯୨୫ ମସିହାରେ କବିଚନ୍ଦ୍ର କାଳିଚରଣ ପଟ୍ଟନାୟକଙ୍କ 'କୌତୁକ ଚିନ୍ତାମଣି' ନାଟକରେ ପ୍ରଥମ କରି ଗଜଲ୍ ଶୈଳୀରେ ଓଡ଼ିଆ ଗଜଲ୍ ରଚନା କରିଥିଲେ । କବିଚନ୍ଦ୍ରଙ୍କ ଭାଷାରେ-

'କା ନିକୁଞ୍ଜେ ପୁହାଇ ରାତି/ ଆସିଲ ରଙ୍ଗେ ନାଗରଗୋ ।
ଡାକି ଦେଲାକି କଜଳପାତି/ ଫୁଲ ଶେଯ ଭୁଲି ସାଗର ଗୋ ।

X X X

ଶରତ ଚାନ୍ଦେ ରଜନୀ ଗନ୍ଧା ମେଳିଛି ଛାତି ମାନିନୀ ।
ଖୋଲିଛି ଦ୍ୱାର ଦେ' ଆଙ୍କି ଦେ'/ ଗଣ୍ଡେ ଚୁମ୍ବ ଆଦର ଗୋ ।'

ଏହାର ପରବର୍ତ୍ତୀ କାଳରେ ୧୯୬୧-୬୨ ମସିହାରେ ବାଲେଶ୍ୱରରୁ ପ୍ରକାଶିତ 'ଆଜିକାଲି' ପତ୍ରିକାରେ ଓଡ଼ିଶାର ପ୍ରଥମ ବିଚାର ବିଭାଗୀୟ ମହିଳା ମାଜିଷ୍ଟ୍ରେଟ୍ ମହାବିଦ୍ୟା ବହିଦାର୍‌ଙ୍କ

ସ୍ୱରଚିତ ଓଡ଼ିଆ ଗଜଲ୍‌ରେ ମକ୍ତା ବା କାବ୍ୟିକ ନାମ 'ମହାଜବିନ୍ ବାଲେଶ୍ୱରୀ' ନାମରେ ପ୍ରକାଶିତ ହେଉ ଥିବାର ଦୃଷ୍ଟିକୁ ଆସେ । ୧୯୬୮ ମସିହାରେ ପ୍ରକାଶିତ ବିଶିଷ୍ଟ ସଙ୍ଗୀତଜ୍ଞ ଅକ୍ଷୟ ମହାନ୍ତିଙ୍କ ସ୍ୱରଚିତ 'ଗୀତି' ସଂକଳନରେ ଓଡ଼ିଆ ଗଜଲ ପ୍ରକାଶିତ ହୋଇ ଥିବାର ଦେଖାଯାଏ । ୧୯୭୭ ମସିହାରେ ନନ୍ଦକିଶୋର ସିଂହଙ୍କ 'ଗୀତି ଓ ଗଜଲ୍' ସଂକଳନରେ ଓଡ଼ିଆ ଗଜଲ ରଚନା କରାଯାଇ ଥିବାର ଦେଖିବାକୁ ମିଳେ । ୧୯୮୯ ମସିହାରେ ପ୍ରକାଶିତ ଗଜଲ୍ ରଚନାକାର ଲକ୍ଷ୍ମୀଧର ନାୟକଙ୍କ 'ଗଜଲ୍‌ଝର୍ଣ୍ଣା' ପୁସ୍ତକ ଓଡ଼ିଆ ଗଜଲ୍ ସୃଷ୍ଟିର ଏକ ସଫଳ ସଂକଳନ କହିଲେ ଅତ୍ୟୁକ୍ତି ହେବ ନାହିଁ । ୬୨ଟି ପ୍ରେମାନୁରାଗ ଗଜଲ୍, ନାରୀ ଶିଳ୍ପୀଙ୍କ ଗାୟନ ପାଇଁ ୨୪ଟି, ଡୁଏଟ୍ ଗଜଲ୍ ୪ଟି, ଶ୍ରୀ ଶ୍ରୀ ଜଗନ୍ନାଥ ଦୈନ୍ତ ଗାଥା ଗଜଲ୍ ୧୫ଟି ଓ ପ୍ରାର୍ଥନା ଗଜଲ୍ ୨୮ଟିର ସମାରୋହ 'ଗଜଲ୍ ଝର୍ଣ୍ଣା' ସଂକଳନ ।

ଗଜଲ୍‌ର ମୁଖ୍ୟ ଚରିତ୍ର ବା ଗଜଲ୍ ସୃଷ୍ଟିର ମୁଖ୍ୟ ନାୟିକା ହେଲା– 'ନାରୀ' । ସେ ମାନସୀ ପ୍ରିୟା ହୋଇପାରେ ଅଥବା ସୁରା ପରିବେଷଣ କରିବା 'ସାକୀ' ହୋଇପାରେ । ଉର୍ଦ୍ଦୁ ଶାୟେର ବା କବିମାନେ ଏମାନଙ୍କର ପ୍ରଶଂସାରେ ଶତମୁଖ ହୋଇ ନିଜ ଭାବନାରେ ସୃଷ୍ଟି କରନ୍ତି ଗଜଲ୍ । ଲକ୍ଷ୍ମୀଧର ନାୟକ ଏହି ଭାବନାରେ ବୋହିଯାଇ ଉର୍ଦ୍ଦୁ କବିମାନଙ୍କ ପରି ନିଜର ଭାବନା ବ୍ୟକ୍ତ କରିଛନ୍ତି । ମାନସୀ ପ୍ରିୟା ସମ୍ବନ୍ଧରେ ଏକ ଗଜଲରେ ଲେଖିଛନ୍ତି–

'ତିନି ଯୁଗର ଏ ପ୍ରେମ କାହାଣୀକୁ/
ତିନିପଦରେ କି କହିହେବ
କାହିଁ ସେ କଷଟି ପଥର ବା ତୋ'ର/
ମନକୁ ପରଖି କହି ହେବ ।

X X X

ପ୍ରୀତି ପରିହାସେ କହିଥିଲି ସେବେ/
ମତେ ଦିନେ ତୁଉ ଧୋକା ଦବୁ
ଭୋଅ ଭୋଅ କାନ୍ଦି କହିଥିଲୁ ମତେ
ଜହର ନାହିଁକି ପିଇ ହବ ।
ସେ ଶପଥ ତୋ'ର ଗଲା କୋଉ ଆଡେ
ଘରେ ବସାଇଚୁ ରସିକ ମେଳା,
ନାୟକ ଦେଖିଲା (ତୋ) କରାମତି ସିନା
ଦୁନିଆ ଆଗେ କି କହିହବ ।'

ସେହିପରି କବି ତଥା ଗଜଲ ରଚନାକାର ଲକ୍ଷ୍ମୀଧର ନାୟକ ଗଜଲ ଲେଖିବା ପାଇଁ ଜଣେ ଶ୍ୟାମଳୀ ପ୍ରେମିକାର ପ୍ରେରଣାକୁ ସ୍ୱୀକାର କରି ତାଙ୍କର ଏକ ଗଜଲରେ ଲେଖିଛନ୍ତି–

'ଗଜଲ ଲେଖିବା ଗାଇବା ପଛରେ
ଛୋଟ ଗୋଟିଏ କାହାଣୀ ଅଛି
ଗୋଟିଏ ଶ୍ୟାମଳୀ ଛଳନାମୟୀର
ହରିଣୀ ଆଖିର ଚାହାଣୀ ଅଛି ।
ଗୀର୍ଜାରେ ତା'ର ଗାଇବାକୁ ଦିନେ
ଗୀତଟିଏ ଆସି ମାଗିଥିଲା
ଲେଖିଦେଲା ପରେ ଶିଖେଇ ଦବାକୁ
କହିଥିଲା ଛୋଟ ମାଗୁଣି ଅଛି ।'

ପ୍ରଣୟର ପ୍ରତିଟି ମୁହୂର୍ତ୍ତକୁ ଗଜଲକାର ଲକ୍ଷ୍ମୀଧର ତାଙ୍କର ଗଜଲରେ ଫୁଟେଇ ପାରିଛନ୍ତି । ପ୍ରୀତି ସ୍ମୃତି ଓ ବିରହ ବେଦନା କେବେ ଭୁଲିବାର ନାହିଁ । ଏମିତି ଅନୁଭୂତି ତାଙ୍କ ଗଜଲରେ ସ୍ପଷ୍ଟ । କବିଙ୍କ ଭାଷାରେ–

'ଜାଳି ପୋଡି ଦେଲି ଶାଢୀ ଆଉ ଚିଠି
ତୋ ସ୍ମୃତିକୁ ଭୁଲି ପାରିଲି କି
ସହର ଶେଷେ ତୋ' ଘର ରାସ୍ତାଟି
ଏଯାଏଁ ମୁଁ ଭୁଲି ପାରିଲି କି ।

X X X

ଏ ଜୀବନେ କିଏ କେତେ ଆସିଯାଏ
'ପ୍ରେମ' ସେ ବି ଦିନେ ସରିଯାଏ
ପୃଥିବୀ କାବ୍ୟେ ସ୍ମୃତିର ଫୁଲକୁ
କେହି କେବେ ଦଳି ପାରିଚି କି ।'

ପି.ବି. ସେଲିଙ୍କ ମତରେ–"Our Sweetest Songs are those, that tell us the sadest thoughts' । ଏଣୁ ଗଜଲ୍‌କାର ଲକ୍ଷ୍ମୀଧର ଦୁଃଖ ଭରା ବିରହ ବେଦନାର ଭାବନାକୁ ତାଙ୍କର ଗଜଲ୍‌ରେ ପରିପ୍ରକାଶ କରିଛନ୍ତି । ଗଜଲ୍‌କାରଙ୍କ ଭାଷାରେ–

'କିଛି କହିବାର ସୁଯୋଗ ନପାଇ
ବହୁତ କିଛି ସେ କହିଗଲା
ନିରବ ଚାହାଣି ତଳେ ମନକଥା
ପଲକ ନିମିଷେ କହିଗଲା ।

X X X

କବି ହୃଦୟର ବିଧୂର ବେଦନା
କିପରି କହିବି ଭାଷା କାହିଁ
ଗୀତ ଗାଉ ଗାଉ ମନେ ପଡ଼ିଗଲା
ଲୋତକ ହୋଇ ସେ ବହିଗଲା ।'

ଅଧିକାଂଶ ଗଜଲ ରଚନାକାରମାନେ ସୁରା, ସାକୀ ଏବଂ ମଧୁଶାଳାକୁ ପ୍ରତୀକଭାବେ ଗ୍ରହଣ କରି ଯୋଗୀ ପୁରୁଷ ପରି ଜୀବନ ଯନ୍ତ୍ରଣାରୁ ମୁକ୍ତି ପାଇବା ପାଇଁ ନିଜ ନିଜ ଗଜଲରେ ପରାମର୍ଶ ଦେଇଥାନ୍ତି । ଫାର୍ସୀ କବିତାରେ ମଧ୍ୟ ଏହା ପରିଲକ୍ଷିତ ହୁଏ । ସେହିପରି ଗଜଲ୍ ରଚନାକାର ଲକ୍ଷ୍ମୀଧର ଏଥିରୁ ବାଦ୍ ଯାଇନାହାଁନ୍ତି । ସେ ତାଙ୍କ ଗଜଲ୍‌ରେ ଲେଖିଛନ୍ତି–

'ଆସ ରସବତୀ ଖୋଜି ମଦଭାଟି
ଯିବା ଚୁପ୍‌ଚାପ୍ ବସିବା ଦୁହେଁ
ଦୁହିଁଙ୍କ ମନର ଭିତିରିଆ କଥା
ପିଆଲା ମୁହଁରେ ଶୁଣିବା ଦୁହେଁ
ଗିଲାସରେ ତୁମେ ମଦ ଢାଳି ଦେଇ
ମୋ' ଓଠ ପାଖକୁ ବଢ଼ାଇ ଦେବ
ସେଥିରୁ ଦି ଢୋକ ତୁମକୁ ପିଆଇ
ଗୋଲାପି ନିଶାରେ ଝୁମିବା ଦୁହେଁ ।

X X X

କଳାର ନାୟିକା କେଳିର ପ୍ରେମିକା
ହୁଅ ନାୟକର ହୃଦୟ ରାଣୀ
ରୂପ ଯଉବନ ମଉଳିବା ଆଗୁଁ
ମରଣ ସୁଖରେ ମଜିବା ଦୁହେଁ ।'

ସେହିପରି ଅନ୍ୟଏକ ଗଜଲ୍‌ରେ ଲକ୍ଷ୍ମୀଧର ନାୟକ ଲେଖିଛନ୍ତି–

'ପଇସା ସରିଚି ପ୍ରେମିକା ଯାଇଚି
ଉଦାସ ନୟନ ଲୁହରେ ଭାସେ
ମୁଁ ସେଇ ବିଚାରା ନିଃସ୍ୱ ମଣିଷ
ନିତିଭାଟି ଘର ଦୁଆରେ ଆସେ ।

X X X

ସେଇ ଯେ ଯୁବତୀ କଥା ଦେଇଥିଲା
ମଲାଯାଏଁ ଭଲ ପାଇବ ମତେ
ବାହାହେବ ବୋଲି ଜଣେ କହିଦେଲା
(ଏବେ) ଗାଳି ଦିଆ ଚିଠି ଡାକରେ ଆସେ ।

ଗୋପନ ପ୍ରେମର ଏଇ ପରିଣତି
ନାୟକ କବିର ଏ ଅନୁଭୂତି
ସବୁ ଚାଲିଗଲେ, ପିଆଲାଟି ଥିଲେ
ଶତବସନ୍ତ ଆୟୁରେ ଆସେ ।'

ଓଡ଼ିଆ ଗଜଲ ରଚନାରେ ଆଧାତ୍ମିକ ଓ ଜାତୀୟତାବାଦୀ ଚେତନାକୁ ଗଜଲ ରଚନାକାର ଲକ୍ଷ୍ମୀଧର ନାୟକ ପ୍ରକାଶ କରି ମର୍ମସ୍ପର୍ଶୀ କରାଇ ପାରିଛନ୍ତି । ଗଜଲ ରଚନାରେ ଏହା ଏକ ଅଭୁତ ଓ ପ୍ରେରଣାଦାୟକ ଛାପ କହିଲେ କିଛି ଭୁଲ ହେବ ନାହିଁ । ଆଧାତ୍ମିକ ଚେତନାରେ ବୋହିଯାଇ ଗଜଲ୍‌କାର ଲେଖିଛନ୍ତି–

'ଆହେ ମହାପ୍ରଭୁ ଚକାଡୋଳା ସବୁ
ଦେଖୁଚି ବୋଲି ତ ଡରୁଚି ମୁଁ
ପାପ ଅସୁମାରି କରି ଗୋଡଧରି
ତୁମ ଗୁଣ ଗୀତ ଗାଇବି ମୁଁ ।

X X X

ସବୁ ତ ବୁଝୁଚି, ଫେର୍‌ବି ଭାବୁଛି
ନାୟକ ମୁଁ କିଆଁ ଧନ୍ଦିଲି ହୁଏ
କି ଭେଳିକି ଏଠି, ଆଲୁଅ କୋଉଠି
ବାଟ ପାଉନି ତ, ଡାକୁଚି ମୁଁ ।'

ସେହିପରି ଜାତୀୟତାବାଦୀ ଗଜଲରେ ସେ ଲେଖିଛନ୍ତି–

'ହେ ଓଡ଼ିଶା, ଆଜି ଜନତା ସଭାରେ,
ଶୁଣ ମୋ ଗଜଲ ଗାନ
ଓଡ଼ିଆ ହୋଇ ମୁଁ ଅଛି ଆଉଥିବି
ରଖିବି ମୋ ସ୍ୱାଭିମାନ ।

ବାସ୍ତବରେ ଉର୍ଦ୍ଦୁ ଗଜଲର ପାରମ୍ପରିକ ଛନ୍ଦ ଓ ଯମକ ରୀତିକୁ ଅନୁସରଣ କରି କବି ନାୟକଙ୍କର ଏପରି ଏକ ପ୍ରୟାସ ଅତି ପ୍ରଶଂସନୀୟ ସତ, କିନ୍ତୁ ତାଙ୍କର ଏ ପ୍ରଚେଷ୍ଟାକୁ ଦୃଢ଼ୀଭୂତ କରିବାରେ ଅନ୍ୟାନ୍ୟ ପ୍ରତିଭାବାନ କବିମାନେ ଆଗେଇ ଆସିବା ଦରକାର । ଅନେକଙ୍କର ମତ, ଓଡ଼ିଆରେ ଗଜଲ ଲେଖା ଯାଇ ପାରିବ ନାହିଁ । ଉର୍ଦ୍ଦୁ ଅକ୍ଷର ଓ ଉଚ୍ଚାରଣରେ ଗଜଲ ଲେଖିବା ଯେତେ ସହଜ ଓଡ଼ିଆରେ ଗଜଲ ଲେଖିବା ସେତେ ସହଜ ନୁହେଁ । ଗଜଲ ସମ୍ବନ୍ଧରେ ସ୍ୱୟଂ କବି ଲକ୍ଷ୍ମୀଧର ଲେଖିଛନ୍ତି–

'ମତେ ଥରେ ଜଣେ ପଚାରିଲେ ଆଚ୍ଛା,
ବୁଝାଅ ତ ଆଗେ 'ଗଜଲ' କ'ଣ

ଓଲଟି କହିଲି, ମୁଁ ଜବାବ୍ ଦେଲି,
ଈଶ୍ୱର କିଏ ଚେହେରା କ'ଣ ।

ଗୁମ୍‌ମାରି ସିଏ ବସିଗଲେ ଟିକେ,
ତା'ପରେ କହିଲେ, ହଁ ଈଶ୍ୱର
ସେ'ତ ନିରାକାର, ଚେହେରା ତାଙ୍କର,
କିଏ ବା ଦେଖିଛି ନିଆରା କ'ଣ ।

ମୁଁ କହିଲି, କିନ୍ତୁ 'ଗଜଲ' ହେଉଚି,
ଯିଏ 'ନିରାକାର' ତାଙ୍କରି ସ୍ୱର
ଶବ୍ଦ ମଧୁର ଧ୍ୱନିରେ ସାକାର
ପ୍ରେମାକୁଳ ଏକ ବାଉଳା ପ୍ରାଣ ।

ସୁରା ଆଉ ସାକୀ, କବିତାକୁ ନେଇ
ନିଖୋଜ ହେଇ ଯିବାକୁ ଜଣେ
ଯୋଗୀ ପୁରୁଷଟି ପରି 'ନିର୍ବାଣ'
ଖୋଜିବସେ, କରେ ମଦିରାପାନ ।
ସେ କହିଲେ ବାଃ' କାହିଁ ସେ ଷୋଡସୀ
ସାକୀ ଆଉ ସୁରା କୋଉଠି ଦୋସ୍ତ,

ମୃଦୁ ଗୁଞ୍ଜନେ କହିଲି, ଜବାବ
ଦେବ ୟା'ର, ମୋଅ ଗଜଲ ଗାନ ।'

କଲିକତାର ଏଚ୍.ଏମ୍.ଭି ରେକର୍ଡ କମ୍ପାନୀ ବିଶିଷ୍ଟ କଣ୍ଠଶିଳ୍ପୀ ସୁଭାଷ ଦାଶଙ୍କ କଣ୍ଠରୁ ୧୯୮୭ ମସିହାରେ ଲକ୍ଷ୍ମୀଧର ନାୟକଙ୍କର ଆଠଟି ଓଡ଼ିଆ ଗଜଲର ଗାୟନକୁ ପ୍ରଥମ କରି କ୍ୟାସେଟ୍ ପ୍ରସ୍ତୁତ କରିଥିଲେ । ଓଡ଼ିଆ ଗଜଲ ଉପରେ ବିସ୍ତୃତ ଭାବେ ଆହୁରି ଆଲୋଚନାର ଆବଶ୍ୟକତା ରହିଛି । ଯଦି ଉଦୀୟମାନ କବିମାନେ ଓଡ଼ିଆ ଗଜଲ ରଚନା କରିବାରେ ଆଗେଇ ଆସନ୍ତେ, ଏହା ନିଶ୍ଚିତ ରୂପେ ଉର୍ଦ୍ଦୁ ଗଜଲ ପରି ଜନପ୍ରିୟତାର ଶୀର୍ଷରେ ପହଞ୍ଚିପାରନ୍ତା । କେବଳ ଉଦ୍ୟମ ଓ ପ୍ରୟାସର ଆବଶ୍ୟକତା ରହିଛି ।

(ବିଶିଷ୍ଟ ସାହିତ୍ୟିକ ସ୍ୱର୍ଗତ ଲକ୍ଷ୍ମୀଧର ନାୟକଙ୍କ ଶତବାର୍ଷିକୀ ଅବସରରେ)

କେଶରପୁର,
କଟକ-୧

# ଆବାହନ

ଶରତ କୁମାରୀ ମିଶ୍ର

ଆସ ମାତା ସରସ୍ୱତୀ ପାହିଯାଉ ଅମାରାତ୍ରି
ଜ୍ଞାନର ଆଲୋକ ଦିଅ ତୁମେ ବିତରି
ହଂସ ବାହନରେ ବସି ବୀଣାକରେ ହସି ହସି
ମଧୁର ବାରତା ଭାଷି ପୁସ୍ତକ ଧରି
ଗଳେ ଶୋଭେ ମୁକୁତା ମାଳା
ଆସ ମା' ଭାରତୀ ତୁମେ ନକରି ହେଳା ।
ବସନ୍ତ ପଞ୍ଚମୀ ତିଥି ଅଟଇ ତୁମ ଜୟନ୍ତୀ
ବର ପ୍ରଦାୟିନୀ ମୋର ପୂଜାକୁ ଘେନ
ସଜାଇ ଫୁଲର ହାର ତା' ମଧରେ ଶତଦଳ
ଅଶୋକ ସହିତ କରି ଅତି ଯତନ
ମଣ୍ଡପ ମୁଁ ସଜାଇ ଅଛି
ନାରିକେଳ ରମ୍ଭାଫଳ ଭୋଗ ବାଢ଼ିଛି ।
ମାଗୋ କମଳ ନୟନୀ ମୋର ମିନତିକୁ ଘେନି
କରୁଣାର ବାରିଟିକେ କର ବରଷା

ମୋ ଲେଖନୀ ମୁନେ ରହି ପଦ ମୋତେ ଦିଅ କହି
ମେଣ୍ଟିଯାଉ ମୋର ମନ ତଳର ଆଶା
ତୁମରି ଦୟା ହେଲେ
ମୂର୍ଖ ମୁଖେ ଭାଷା ଫୁଟେ ମାତା ଗୋ ଭଲେ ।
ଲଡୁ ରସଗୋଲା ଖଜା ଖଇ ସହିତରେ ଗଜା
ଅନେକ ମିଷ୍ଟାନ୍ନ ବାଢ଼ି ଅଛି ଭୋଗରେ
କରିବ ପୂଜା ଗ୍ରହଣ କରୁଅଛି ମନେ ଧ୍ୟାନ
ଶ୍ୱେତ ପଦ୍ମାସନୀ ତୁମେ ମୋର କୁଟୀରେ
ହେଉଥିବ ବିରାଜମାନ
ତୁମ ଦର୍ଶନେ କଟିବ ମୋର କଷଣ ।

ଏନ୍-୫/୧୨୮,
ଆଇଆର୍‌ସି ଭିଲେଜ୍, ଭୁବନେଶ୍ୱର

# ମାଲକାନଗିରିର ବଡ଼ ଯାତ୍ରା

ଡକ୍ଟର ପ୍ରମୋଦିନୀ ହୋତା

ସବୁଜ ସୁନ୍ଦର ବନଭୂମି ବିମଣ୍ଡିତ ପ୍ରକୃତିର ନୈସର୍ଗିକ ଗନ୍ତାଘର, ଅନେକ ମୂଲ୍ୟବାନ ଖଣିଜ ପଦାର୍ଥର ପରିପୂର୍ଣ୍ଣ ରତ୍ନଗର୍ଭା ମାଲ୍ୟବନ୍ତ ବା ମାଲକାନଗିରି ଜିଲ୍ଲା । ଯେଉଁଠି ରହିଛି ମହାଭାରତ ଓ ରାମାୟଣର ଅନେକ ସ୍ମୃତି । ପୌରାଣିକ ପୃଷ୍ଠଭୂମିକୁ ଅବଲୋକନ କଲେ ଜଣାଯାଏ 'ବଡ଼ ଯାତ୍ରା' ସହିତ ରହିଛି ଅନେକ ସାମଞ୍ଜସ୍ୟ ମହାଭାରତ ସହିତ । ଏହି ରାଜ୍ୟରେ ଜରାସନ୍ଧ ରାଜା ରାଜତ୍ୱ କରୁଥିଲେ । ମା' ଯାଜ୍ଞସେନୀ (ମୁତ୍ୟାଲାମ୍ମା)ଙ୍କୁ ସନ୍ତୁଷ୍ଟ କରି ଲକ୍ଷେ ରାଜାଙ୍କ ମଉଡ଼ମଣି ହେବା ପାଇଁ ସେ ଲକ୍ଷେ ବଳି ଦେବା ପାଇଁ ଯଜ୍ଞ ଆରମ୍ଭ କଲେ । ବୀର ପ୍ରତାପୀ ଜରାସନ୍ଧ ବିଭିନ୍ନ ରାଜାମାନଙ୍କୁ ଆଣି ବନ୍ଦୀ କରି ରଖିଲେ । ଏତିକି ବେଳେ ପଣ୍ଡୁରାଜା ସ୍ୱର୍ଗାରୋହଣ କରି ନପାରି ତିନି ପାହାଚ ତଳେ ରହିଲେ । ତାଙ୍କ ଆତ୍ମାର ଶାନ୍ତି ପାଇଁ ଯୁଧିଷ୍ଠିରଙ୍କୁ ରାଜସୂୟ ଯଜ୍ଞ କରିବାକୁ ପଡ଼ିବ । ତେଣୁ ଯୁଧିଷ୍ଠିର କୃଷ୍ଣଙ୍କ ସହାୟତା ଲୋଡ଼ିଲେ । ଲକ୍ଷେ ରାଜାଙ୍କୁ ଜରାସନ୍ଧ ବନ୍ଦୀ କରିଛି ଏବଂ ଜରାସନ୍ଧକୁ ମାରି ଲକ୍ଷେ ରାଜାଙ୍କୁ ଆଣିବାକୁ କୃଷ୍ଣ ପରାମର୍ଶ ଦେଲେ । ଏ କଥା ଶୁଣି କୃଷ୍ଣ, ଭୀମ, ଅର୍ଜୁନ ବ୍ରାହ୍ମଣ ବେଶରେ ଜରାସନ୍ଧର ଯଜ୍ଞ ପୀଠକୁ ଗମନ କଲେ ଶିମୁଳି ବୃକ୍ଷକୁ ପ୍ରଥମ ଦ୍ୱାରରେ, ଭେରୀକୁ ଦ୍ୱିତୀୟ ଦ୍ୱାରରେ, ଗଧକୁ ତୃତୀୟ ଦ୍ୱାରରେ ଏବଂ ନିଜ ପୁତ୍ର ସହଦେବକୁ ଚତୁର୍ଥ ଦ୍ୱାରରେ ଜରାସନ୍ଧ ଜଗୁଆଳି କରି ରଖିଥାଏ । ଶିମୁଳି ବୃକ୍ଷକୁ ଅର୍ଜୁନ ଶର ଦ୍ୱାରା ଉପାଡ଼ିବା ପରେ ଶାପମୁକ୍ତ ହେଲା ଶିମୁଳି ବୃକ୍ଷ । ଭେରୀକୁ ଗଦାରେ ମାରି ଚୂନା କଲେ ଭୀମ ଏବଂ ଗଧର ପାଦ ଧରି ଶ୍ରୀକୃଷ୍ଣ ଭିତରକୁ ଯିବାକୁ ଅନୁରୋଧ କଲେ । ଏହାଦ୍ୱାରା ଭେରୀ, ଗଧ ଶାପ ମୁକ୍ତ ହେଲେ । ସହଦେବକୁ କୃଷ୍ଣ ନିଜର ବିଷ୍ଣୁ ରୂପ ଦେଖାଇବା ଦ୍ୱାରା ସହଦେବ ପଦ ବନ୍ଦନା କରି ଭିତରକୁ ଛାଡ଼ି ଦେଲେ । ତିନି ବ୍ରାହ୍ମଣ ରୂପୀ ଅର୍ଜୁନ, ଭୀମ ଏବଂ କୃଷ୍ଣ ଜରାସନ୍ଧ ସହିତ ଅଙ୍ଗ ଯୁଦ୍ଧ କଲେ । ଶେଷରେ ଜରାସନ୍ଧ ହାରିଗଲେ । ଭୀମ ଶତଶୃଙ୍ଗ ବଳରେ ଜରାସନ୍ଧକୁ ବଧ କରି ଲକ୍ଷେ ରାଜାଙ୍କୁ ମୁକ୍ତ କଲେ । ଏହା ଦେଖି ଯାଜ୍ଞସେନୀ (ମୁତ୍ୟାଲାମ୍ମା) ଦେବୀ ଭକ୍ଷଣ କରିବାକୁ ଆଗେଇ ଗଲେ ଶ୍ରୀକୃଷ୍ଣ, ଭୀମ ଓ ଅର୍ଜୁନଙ୍କୁ । ଶ୍ରୀକୃଷ୍ଣ ଦେବୀକୁ ସାନ୍ତ୍ୱନା ଦେଇ କହିଲେ ତୁମକୁ ନିଶ୍ଚୟ ଲକ୍ଷେ ବଳି ଦିଆଯିବ ଏବଂ ଏହି ସ୍ଥାନରୁ ବାହାରିଲେ ପ୍ରତି ପାଦରେ ଗୋଟିଏ ଗୋଟିଏ ବଳି ଦିଆଯିବ ଏବଂ ତୁମର ଯାତ୍ରା 'ବଡ଼ ଯାତ୍ରା'ରେ ନାମିତ ହେବ । ଏହା ଶୁଣି ଦେବୀ ସନ୍ତୁଷ୍ଟ ହେଲେ । କୃଷ୍ଣ, ଭୀମ, ଅର୍ଜୁନ ତିନି ଜଣ ଯାଜ୍ଞସେନୀକୁ ପାଛୋଟି ଆଣି ମାନବ କୋଣ୍ଡା (ଯଜ୍ଞକୁଣ୍ଡ)ରୁ ବାହାରିଲେ ।



ପ୍ରତି ପାଦରେ ବଳି ପଡ଼ିଲା । ମାଲକାନଗିରିଠାରେ ପହଞ୍ଚିଲା ବେଳକୁ ଲକ୍ଷେ ବଳି ପୂର୍ଣ୍ଣ ହୋଇଗଲା । ଦେବୀ ସନ୍ତୁଷ୍ଟ ହେଲେ କହିଲେ ଆଗକୁ ମୁଁ ଯାଇ ପାରିବିନି । ଏଠାରେ ହିଁ ରହିବି ।

'ବଡ଼ ଯାତ୍ରା' ସେହି ଦିନଠାରୁ ପାଳନ କରାଯାଉଛି । କୋୟାମାନଙ୍କର ପ୍ରସିଦ୍ଧ ଗଣପର୍ବ ହେଉଛି ବଡ଼ ଯାତ୍ରା । ବଡ଼ ଯାତ୍ରାରେ କାନ୍ନାମାରାଜୁ (କୃଷ୍ଣ), ପୋତୁ ରାଜୁ (ଭୀମ), ବାଲା ରାଜୁ ( ଅର୍ଜୁନ)ଙ୍କୁ ପୂଜା କରାଯାଇଥାଏ ।

କୋୟା ଆଦିବାସୀଙ୍କ ଭାଷା ଓ ସଂସ୍କୃତି ସହିତ ଆନ୍ଧ୍ର ପ୍ରଦେଶର ତେଲୁଗୁ ଭାଷା ଓ ଛତିଶଗଡ଼ ପ୍ରଦେଶର ଆଦିବାସୀ ସଂସ୍କୃତିର ପ୍ରଭାବ ରହିଛି । 'ରାଜୁ' ଶବ୍ଦର ଅର୍ଥ ତେଲୁଗୁ ଭାଷାରେ ରାଜା, 'ପୋତୁ' ଶବ୍ଦର ଅର୍ଥ ବଳବାନ, 'ବାଲା' ଶବ୍ଦର ଅର୍ଥ ଛୋଟ ଏବଂ ମୁତ୍ୟାଲାମ୍ମାଙ୍କ ସହିତ ତେଲୁଗୁ ଭାଷାର ପ୍ରଚଳନ ରହିଛି । ପ୍ରଭୁ ଜଗନ୍ନାଥଙ୍କ ନୂଆ କଳେବର ନିମ୍ବ କାଠରେ ହୋଇଥାଏ । ଠିକ୍ ସେହିଭଳି ଏହି ତିନି ଠାକୁରଙ୍କ କଳେବର ବାଉଁଶରେ ତିଆରି କରାଯାଏ । ଏହି ଯାତ୍ରା ପ୍ରତି ଦୁଇ ବର୍ଷରେ ଥରେ ପାଳନ କରାଯାଏ । ଯେଉଁ ବର୍ଷ ଯାତ୍ରା ହୁଏ, ସେହି ବର୍ଷ ମାନବ କୋଣ୍ଡା ପାହାଡ଼ର ଏକ ନିର୍ଦ୍ଦିଷ୍ଟ ଛାଞ୍ଚଡ଼ା ପଥର ନିକଟରେ ତିନୋଟି ବାଉଁଶ ଗଜା (ପିଲ) ଉଠିଥିବା ଦେଖାଯାଏ । ସେବାୟତକାରୀ ଏହାକୁ ପ୍ରଥମେ ଦେଖିଥାଏ । ସେ ସମସ୍ତ ପୂଜକ ଏବଂ ବଗରିଲାମାନଙ୍କୁ ଏହି କଥା ଜଣାଇ ଦିଏ । ସେବାୟତକାରୀମାନେ ଏହି ତିନୋଟି ବାଉଁଶ ଗଜାକୁ କାଟି ଆଣନ୍ତି, ଧୂପ, ଦୀପ, ନଡ଼ିଆ ଦେଇ ପୂଜା କରାଯାଏ । ମୟୂର ପୁଚ୍ଛ ଦ୍ୱାରା ତିନି ଠାକୁରଙ୍କୁ ସଜାଇ ବିମାନରେ ପ୍ରତିଷ୍ଠା କରାଯାଏ । କୁମ୍ଭ ମାଧ୍ୟମରେ ଯାଜ୍ଞସେନୀ ପୀଠ କରାଯାଏ । ପୂର୍ବ କାଳରେ ରାଜାମାନେ ନାୟକ, କୁମ୍ଭାର, ବଢ଼େଇ ଓ ବଗରିଲାଙ୍କୁ ନିମନ୍ତ୍ରଣ କରୁଥିଲେ । ବଢ଼େଇ ବାଉଁଶ ତାଟଲଗା ଡ଼ଙ୍ଗା, ଠାକୁରଙ୍କ ପାଇଁ କୁମ୍ଭାର ମାଟିରେ ହାଣ୍ଡି ତିଆର କରୁଥିଲା ଏବଂ ବଗରିଲା ଚାଉଳ ମୁଠାଏ ଧରି ବଣକୁ ଯାଉଥିଲା । ସେଠାରେ ଠାକୁରଙ୍କୁ ସ୍ମରଣ କରି ନିଜର ଚାରିଆଡ଼େ ଚାଉଳ ବିଞ୍ଚି ଦେଉଥିଲା । ଚାଉଳକୁ ଖାଇବାକୁ ଚାରି ଦିଗରୁ ମୟୂରମାନେ ଆସୁଥିଲେ । ବଗରିଲା ମୟୂରମାନଙ୍କଠାରୁ ମୟୂର ପୁଚ୍ଛ ସଂଗ୍ରହ କରି ଆଣୁଥିଲା । ମୟୂର ପୁଚ୍ଛ ସଂଗ୍ରହ କଲା ପରେ ଯଦି ମୟୂର ଉଡ଼ି ଯାଇ କଞ୍ଚା ଡ଼ାଳରେ ବସୁଥିଲା, ତେବେ ବିଶ୍ୱାସ କରାଯାଉଥିଲା ସେହି ବର୍ଷ ଭଲ ଫସଲ ହେବ ଏବଂ ଲୋକମାନେ ଶାନ୍ତିରେ ରହିବେ । ଯଦି ମୟୂର ଉଡ଼ି ଯାଇ ଶୁଖିଲା ଡ଼ାଳରେ ବସୁଥିଲା, ତେବେ ସେହିବର୍ଷ ମରୁଡ଼ି ପଡିବ ଏବଂ ଲୋକମାନେ ଅଶାନ୍ତିରେ ରହିବେ ବୋଲି ବିଶ୍ୱାସ କରା ଯାଉଥିଲା ।

ଏହି ପର୍ବ ହେଉଛି ଫସଲର ପର୍ବ । ଯାତ୍ରା ସମୟରେ ମାନବ କୋଣ୍ଡାଠାରୁ ଠାକୁରଙ୍କୁ ପାଛୋଟି ଆଣିବା ପାଇଁ ଭକ୍ତମାନେ ପଟୁଆର ବିମାନ ସହିତ ଫଗୁଣ ମାସର ପ୍ରଥମ ବୁଧବାର ଦିନ ବାହାରି ପଡ଼ନ୍ତି ନୌକାରେ ପାରହୋଇ । ପୋଲରୁ ସ୍ନାନ ଓ ତାଡ଼ା କରାଉ ସ୍ନାନ ଠାକୁରଙ୍କୁ କରାଯାଏ ଏବଂ ପ୍ରଥମେ ଅନ୍ନଭୋଗ ହୁଏ । ତା'ପରେ ଠାକୁରଙ୍କୁ କାଲିମେଳା କାଙ୍ଗରୁକୋଣ୍ଡା, ପୋଟେରୁ, ଶିଖି ପାଲି, ମାଝି ମାଣ୍ଡିଆ ଭଟ୍ଟା ଇତ୍ୟାଦି ସ୍ଥାନରେ ଅବସ୍ଥାନ କରାଯାଏ । ପ୍ରତି ସ୍ଥାନରେ ଭୋଗ ହୁଏ । ଯାତ୍ରା ସମୟରେ ରାସ୍ତାରେ ଗାଁର ଦେବଦେବୀଙ୍କ ଲାଠିକୁ ଦୈବୀ ବସ୍ତ୍ର, କଉଡ଼ି, ଝୁମୁକା ଓ ମୟୂର ପୁଚ୍ଛରେ ସଜ୍ଜିତ କରାଯାଇଥାଏ । ନିଜ ନିଜ ଗ୍ରାମର ଲାଠିକୁ ଶିରା, ପୂଜେର, ଓ୍ୱାର୍ଡ୍ଡେ ଲାଠିକୁ ଧରି ସାଥିରେ ଆସିଥାନ୍ତି । ଷଷ୍ଠ ଦିନରେ ମାନବ କୋଣ୍ଡାସ୍ଥିତ ମୁତ୍ୟାଲାମା ମନ୍ଦିର ପାଖରେ ଅସ୍ଥାୟୀ ତାଳପତ୍ର ଛପର ହୁଏ । ତା'ପରେ ଧୂପ, ଦୀପ ପାଇଁ ତେଲ ପେଡ଼ା ହୁଏ । ଅଷ୍ଟମ ଦିନରେ ବାଉଁଶ ମରା ହୁଏ ତିନି ଠାକୁରଙ୍କ ପାଇଁ ସାଡ଼କାନପଲ୍ଲୀଠାରେ । ପୋଲୁରୁ ଗାଁରୁ ନଇ ପାର ପାଇଁ ବାଉଁଶ ତାଟ ଲଗା ଡ଼ଙ୍ଗା ତିଆରି ହୁଏ । ତା'ପରେ ମୟୂର ପୁଚ୍ଛ ପାଇଁ ଜାଲ ଚିରା ହୁଏ । ଏକାଦଶ ଦିନ ପ୍ରତିମା ନିର୍ମାଣ ହୁଏ ଏବଂ ବାଉଁଶ ପିଲରେ ମୟୂର ପୁଚ୍ଛ ଆବୃତ କରାଯାଏ । ଏହା ପରେ ପୋଲୁରୁ ତାଡ଼କା ପୋଖରୀରେ ସ୍ନାନ ହୁଏ । ସେଠାରେ ପୁରୁଣା ମୂର୍ତ୍ତିକୁ ବିସର୍ଜନ କରାଯାଏ ଏବଂ ନୂଆ ମୂର୍ତ୍ତିକୁ ସ୍ନାନ କରାଯାଏ । ଏହା ପରେ ଆଠ ଦିନ ପ୍ରକୃତ ଯାତ୍ରା ଅନୁଷ୍ଠିତ ହୋଇଥାଏ ।

ମାନବ କୋଣ୍ଡାରୁ ଠାକୁର ବାହାରିବା ପରେ ପ୍ରଥମ ଦିନ ଠାକୁରଙ୍କ ଅନ୍ନ ଭୋଗ ହୁଏ । ଦ୍ୱିତୀୟ ଦିନ ଗୁବଲେରୁ ଦେଇ କାଲିମେଳା ଯାତ୍ରା ଏବଂ ସେଠାରେ ବିଶ୍ରାମ ନିଆଯାଏ । ତୃତୀୟ ଦିନ କାଲିମେଳାଠାରୁ କାଙ୍ଗୁରୁ କୋଣ୍ଡା ଯାତ୍ରା ଓ ରହଣୀ ହୁଏ । ଚତୁର୍ଥ ଦିନ ପୋଟେରୁ, ଦିବାଶିଖ ପାଲ୍ଲୀ ଏବଂ ସଂଧ୍ୟାରେ ତମସା ଯାତ୍ରା ଓ ବିଶ୍ରାମ ନିଆଯାଏ । ପଞ୍ଚମ ଦିନ ସକାଳେ ମାଲକାନଗିରି ସହରରେ ଅବସ୍ଥାନ ହୁଅନ୍ତି ଠାକୁରମାନେ । ସହରର ତିନୋଟି ସ୍ଥାନର ଉପକଣ୍ଠରେ ଥିବା କନ୍ୟାମାଝି ନିକଟରେ, ତା'ପରେ ମାଣ୍ଡିଆ ଭଟ୍ଟାରେ, ତା'ପରେ ମାଉଲି ମନ୍ଦିରର ବଡ଼ ଯାତ୍ରା ପଡ଼ିଆରେ ତିନି ଠାକୁର ରାତ୍ର କଟାଇ ଥାନ୍ତି । ଠାକୁରମାନେ ଏବଂ ଦେବୀ ଯାଜ୍ଞସେନୀ ମାନବ କୋଣ୍ଡା ପର୍ବତରୁ ମାଲକାନଗିରି

ଆସିବା ପର୍ଯ୍ୟନ୍ତ ପ୍ରତିଟି ପାଦରେ ବଳି ଦିଆଯାଏ । ବିଭିନ୍ନ ସ୍ଥାନରୁ ଶହ ଶହ ଲାଠି, ଧ୍ୱଜାକୁ ଶିରୁଆମାନେ କାନ୍ଧରେ ଧରି ଢ଼ୋଲ, ଢ଼ାମ୍ପ, ବଜଣାରେ ନାଚି ନାଚି ଆସିଥାନ୍ତି । ଶହ ଶହ ଭକ୍ତ ରାସ୍ତାରେ ଶୋଇ ଗୁହାରି ପଡ଼ିଥାନ୍ତି । ହୁଳହୁଳି ମନ୍ତ୍ର ଧ୍ୱନିରେ ପୀଠଟି କମ୍ପି ଉଠେ । ଆଦିବାସୀ ରମଣୀମାନେ ମୟୂର ପୁଛ, ଅଣ୍ଟାରେ ଝୁମୁକା, ରଙ୍ଗ ବେରଙ୍ଗ ଶାଢ଼ୀ ପିନ୍ଧି ନାଚି ନାଚି ଆସିଥାନ୍ତି । ଲୋକଙ୍କ ବିଶ୍ୱାସ କେହି ଯଦି ଠାକୁରଙ୍କୁ ଟାପରା କିମ୍ବା ଅବିଶ୍ୱାସ କରିଥାଏ, ତା'ର କ୍ଷତି ହୋଇଥାଏ । ମାଉଲି ମନ୍ଦିର ଯିବା ବାଟରେ ଶହ ଶହ ପାରା ଉଡ଼ାଯାଏ । ମାଉଲି ମନ୍ଦିର ଯିବା ସମୟରେ ଛତିଶଗଡ଼ ପ୍ରଦେଶର ସୁକୁମାର ଅଞ୍ଚଳର ରାଜା ଛେରା ପହଁରା କରିଥାନ୍ତି । ଗୁପ୍ତ ପୂଜା କରାଯାଇଥାଏ । ସେଥିରେ ଭାତ ବିଞ୍ଚା ଯାଇଥାଏ । ତା ଉପରେ ତାଟରେ ଘୋଡ଼ାଇ ଦିଆଯାଏ । କିନ୍ତୁ କିଛି ସମୟ ପରେ ଦେଖାଯାଏ ଯେ ସେଠାରେ ବିଞ୍ଚା ଯାଇଥିବା ଭାତ ନଥାଏ । ପୁରୁଷ, ସ୍ତ୍ରୀମାନେ କଉଡ଼ି ମାଳରେ ପୋଷାକ ପିନ୍ଧି ହାତରେ ମୟୂର ଚୂଳ ଧରି ଠାକୁରଙ୍କ ସହିତ ନାଚି ନାଚି ଆସନ୍ତି । ବଡ଼ ଲାଠି ବୋହିଥିବା ଶିରା ଉପରେ ଦେବତା ପ୍ରସନ୍ନ ହୋଇଥାନ୍ତି । ସେ ନିର୍ଦ୍ଦିଷ୍ଟ ପୋଷାକ ପରିଧାନ କରିଥାଏ ଏବଂ ଦୁଇ ହାତରେ ଦୁଇ ମୁଠା ମୟୂର ପୁଛ ଏବଂ ଚୁଡ଼ି ସିନ୍ଦୂର ପିନ୍ଧି ଥାଏ । ପ୍ରତି ପାଦରେ ଝୁଣା ଓ ଧୂପ ଶିରାକୁ ଦେଇ ପୂଜା କରାଯାଏ, ତା'ପରେ ତା' ଦେହରେ ଦୈବୀ ଶକ୍ତି ପ୍ରବେଶ କରେ । ସେ ମୁଣ୍ଡ ଓ ଦେହ ହଲାଇ ଲାଠି ଧରି ଦେହ ଥରାଇ ଥରାଇ ବାଜାର ତାଳେ ତାଳେ ନାଚି ଥାଏ । ଯେଉଁ ଲାଠି ଯେତେ ଓଜନ ଓ ଲମ୍ବ ସେଥିରେ ପ୍ରବେଶ କରିଥିବା ଦେବୀ ସେତେ ତାଗଡ଼ା ଓ କ୍ରୋଧି ବୋଲି ଧରାଯାଏ । ଏହି ସମୟରେ ଦେବୀ କଣ୍ଟା ଦୋଳିରେ ବସନ୍ତି । ଲୁହା ଶିକୁଳିରେ ପିଠିରେ ଶିରାକୁ ପ୍ରହାର କରାଯାଏ । ପାଇକ ପୋଷାକରେ କାଠ ଘୋଡ଼ାରେ ଚଢ଼ି ଆଦିବାସୀ ଯୁବକ, ଯୁବତୀମାନେ ନାଚି ନାଚି ଠାକୁରଙ୍କୁ ସ୍ୱାଗତ ଜଣାଇ ଆଣିଥାନ୍ତି । ପାରାମାନେ ସୁସଜ୍ଜିତ ଦେବ ଦେବୀଙ୍କ ବିମାନରେ ମଧ୍ୟ ବସିଥାନ୍ତି ।

ଷଷ୍ଠ ଦିନରେ 'ବଡ଼ ଯାତ୍ରା' ପର୍ବ ଜାକ ଜମକରେ ପାଳନ କରାଯାଏ । ସେଠାରେ ମେଳା ବସେ, ଲାଠି ସହ ବିଭିନ୍ନ ଗ୍ରାମରୁ ଆସିଥିବା ଶିରା, ଓ୍ୱାର୍ଡେ ଏବଂ ଦିଶାରୀ ଏକାଠି ଲାଠି ରଖନ୍ତି ଏବଂ ପୂଜା କରାଯାଏ । ଧୂମ୍ ଧାମରେ ପର୍ବ ପାଳନ କରାଯାଏ । ସପ୍ତମ ଦିନରେ ମାଉଳି ମନ୍ଦିରର ବଡ଼ ଯାତ୍ରା ପଡ଼ିଆରେ ତିନି ରାତ୍ରି ସମସ୍ତେ କଟାଇଥାନ୍ତି । ଆନ୍ଧ୍ର ଏବଂ ଛତିଶଗଡ଼ର ବିଭିନ୍ନ ସ୍ଥାନରୁ ବହୁ ବ୍ୟକ୍ତିଙ୍କ ସମାଗମ ହୁଏ । ଯୁବକ ଯୁବତୀ ମହୁରୀ, ଢ଼ୋଲ, ଘଣ୍ଟାର ତାଳେ ତାଳେ ଢ଼େମ୍‌ସା ନାଚ ନାଚନ୍ତି । ଅଷ୍ଟମ ଦିନ ଶେଷରେ ଅନ୍ନ ଭୋଗ ହୁଏ । ରାତ୍ରି ବାର ଘଣ୍ଟା ସମୟରେ ଏହି ଭୋଗ ହୋଇଥାଏ । ନବମ ଦିନ ପ୍ରାତଃ ଦେବ ଦେବୀ ନିଜ ନିଜର ଆସ୍ଥାନକୁ ଫେରିଥାନ୍ତି । ବଡ଼ ଯାତ୍ରା ମାଘ ପୂର୍ଣ୍ଣିମାରୁ ଫାଲ୍‌ଗୁନ ପୂର୍ଣ୍ଣିମା ପର୍ଯ୍ୟନ୍ତ ପାଳନ କରାଯାଇଥାଏ । ମାନବ କୋଣ୍ଡାଠାରୁ ମାଲକାନଗିରି ପ୍ରାୟ ୭୦ କି.ମି.ର ରାସ୍ତା । ବଳି ପ୍ରଥା ଆଜି ମଧ୍ୟ ରହଛି ବଡ଼ ଯାତ୍ରା ପର୍ବରେ । କାରଣ ଆଦିବାସୀମାନଙ୍କ ବିଶ୍ୱାସ ରହିଛି ଯେ, ବିଭିନ୍ନ ଯାନି ଯାତ୍ରାରେ ଦେବତା ଖୁସୀ ହୋଇ ଭଲ ଫସଲ ଦେଇଥାନ୍ତି ଏବଂ ଦେବତା ସମସ୍ତଙ୍କର ଦୁଃଖ ମୋଚନ କରିଥାନ୍ତି ।

ପାଇଲ ସାହି,
ଜୟପୁର, କୋରାପୁଟ



# ପର୍ଯ୍ୟଟନ ପୃଷ୍ଠାରେ ଅଂଶୁପା

ଅଧ୍ୟାପକ ମନୋଜ କୁମାର ମହାପାତ୍ର

ଅଂଶୁପା ଏସିଆ ମହାଦେଶର ବୃହତ୍ତମ ମଧୁର ଜଳ ହ୍ରଦ ରୂପେ ପରିଚିତ । କଟକ ଜିଲ୍ଲାର ବାଙ୍କୀ ଉପଖଣ୍ଡର ପୂର୍ବତନ ସରଣ୍ଡା ରାଜ୍ୟରେ ମହାନଦୀର ଉତ୍ତର ପାର୍ଶ୍ୱରେ ଏହି ହ୍ରଦ ଅବସ୍ଥିତ । ବାଙ୍କୀ ଉପଖଣ୍ଡସ୍ଥ ବାଙ୍କୀ-୧ ମଣ୍ଡଳର ୬ଗୋଟି ଗ୍ରାମ ପଞ୍ଚାୟତ ଯଥା– ସାମନ୍ତରାପୁର, ଓସ୍ତିଆ, କନ୍ତପହଁରା, କଦଳୀବାଡ଼ି, ବନ୍ଧାଳ ଓ ବାଉଁଶପୁଟର ପ୍ରାୟ ୨୭ଗୋଟି ଗ୍ରାମ ଅଂଶୁପା ଚାରିପାର୍ଶ୍ୱରେ ରହିଛି। ସରଣ୍ଡା ଏକଦା ଏକ ସ୍ୱତନ୍ତ୍ର ରାଜ୍ୟ ଥିଲା । ବାଙ୍କୀଗଡର ସମ୍ପର୍କ ସରଣ୍ଡାଗଡ ସହିତ ଅତି ପ୍ରାଚୀନ । ବାଙ୍କୀଗଡର ଧଳ ରାଜବଂଶର ଭ୍ରାତୃଗଣ ସରଣ୍ଡା ରାଜ୍ୟର ଶାସକ ଥିଲେ । ଐତିହାସିକ ତଥ୍ୟାବଳୀରୁ ଜଣାଯାଏ ଯେ ସରଣ୍ଡାଗଡ ରାଜପରିବାରରୁ ଜଣେ ବିବାହ କରିଥିଲେ ତିଗିରିଆ ରାଜାଙ୍କ ଜେମାଙ୍କୁ । କିନ୍ତୁ ଡମପଡାର ରାଜାଙ୍କ ପକ୍ଷେ ଏହା ଅସହ୍ୟ ହୋଇଥିଲା । ପ୍ରତିଶୋଧ ନେବାପାଇଁ ସେ ବନ୍ଧୁତା ବାନ୍ଧିଥିଲେ ସରଣ୍ଡା ରାଜାଙ୍କ ସହ ଓ ସେହି ସୁଯୋଗରେ ନୌକା ବିହାର କରୁଥିବା ସମୟରେ ଡମପଡା ରାଜା ସରଣ୍ଡା ରାଜାଙ୍କୁ ଅଂଶୁପା ହ୍ରଦ ମଧ୍ୟକୁ ନୌକାରୁ ଠେଲିଦେବା ଫଳରେ ସରଣ୍ଡା ରାଜାଙ୍କର ମୃତ୍ୟୁ ହୋଇଥିଲା । ତା'ପରେ ଉକ୍ତ ରାଜ୍ୟ ରାଜ୍ୟ ଶୂନ୍ୟ ହୋଇଯିବାରୁ ଏହା ବାଙ୍କୀ ରାଜ୍ୟ ସହିତ ମିଶି ଯାଇଥିଲା । ଆଉ ଏକ କିମ୍ବଦନ୍ତୀ ଅନୁସାରେ କେଶରୀବଂଶର ରାଜା ସୁବର୍ଣ୍ଣକେଶରୀ ଚୋଡଗଙ୍ଗଦେବଙ୍କ ଦ୍ୱାରା ପରାସ୍ତ ହୋଇ ଅଂଶୁପା କୂଳରେ ଅଜ୍ଞାତବାସ କରିଥିଲେ । ଅଂଶୁପାର ମନୋରମ ପ୍ରାକୃତିକ ପରିବେଶ ତାଙ୍କୁ ମୁଗ୍ଧ କରିଥିଲା ଓ ଶେଷରେ ସେ ସେଠାରେ ରହି ତୃତୀୟାଦେବ ମନ୍ଦିର ପ୍ରତିଷ୍ଠା କରିଥିଲେ । ତେଣୁ ସେ ଆଶ୍ରୟ ନେବା ସ୍ଥାନକୁ ସାଆଁନ୍ତପୁର ବା ସାଆଁନ୍ତରାପୁର ଓ ଏବେ ସାମନ୍ତରାପୁର ବା ସୁବର୍ଣ୍ଣପୁର କୁହାଯାଉଛି ଏବଂ ମହାନଦୀର ତଟଦେଶରେ ଅନ୍ୟ ଏକ ଶିବଙ୍କର ମନ୍ଦିର– ସୁବର୍ଣ୍ଣକେତକୀ ରହିଅଛି ।

ଅଂଶୁପା ହ୍ରଦର ଲମ୍ବ ପ୍ରାୟ ୩ କି.ମି. ଓ ପ୍ରସ୍ଥ ବା ଓସାର ପ୍ରାୟ ୧.୫ କି.ମି. । ଏହାର କ୍ଷେତ୍ରଫଳ ୩୮୨ ଏକର । ଏହି ହ୍ରଦର ଗଭୀରତା ୪୦ ଫୁଟ ଅଟେ । ହ୍ରଦର ପଶ୍ଚିମ ଦିଗରେ ସରଣ୍ଡା ପାହାଡ ଓ ରାଜବାଟିର ଦୁର୍ଗ ଏବଂ ଦକ୍ଷିଣ ଦିଗରେ ମହାନଦୀ ପ୍ରବାହିତ । ଉକ୍ତ ହ୍ରଦ ନିକଟରେ ମହାନଦୀରୁ ବାହାରିଛି ଅନ୍ୟ ଏକ ଶାଖା ନଦୀ ଯାହାର ନାମ ହୁଳୁହୁଳା, ଲମ୍ବ ପ୍ରାୟ ୪ କି.ମି. ଅଟେ । ଆଉ ମଧ୍ୟ ଅଂଶୁପା ହ୍ରଦର ଏକ ପ୍ରାକୃତିକ ନାଳ ବା ଜୋର କାବଲା ମହାନଦୀ ସହ ସଂଯୋଗ ହୋଇଛି । ହ୍ରଦର ପୂର୍ବପଟରେ ଡାହାଳିଆ ରାଜବଂଶ ଦ୍ୱାରା ନିର୍ମିତ ଏକ ବନ୍ଧ ଓ କୂପ ମଧ୍ୟ ରହିଛି । ଏହି ଦୁଇଟି କୀର୍ତ୍ତି ଡାହାଳିଆ ରାଜାଙ୍କ ଦ୍ୱାରା ନିର୍ମିତ । ଅଂଶୁପା ହ୍ରଦର ପାର୍ଶ୍ୱରେ ଥିବା ଗ୍ରାମମାନଙ୍କରେ ଅନେକଗୁଡ଼ିଏ ପ୍ରାକୃତିକ ଜଳାଶୟ ବା ଜଳପାଟ ରହିଛି । ସେଗୁଡ଼ିକ ହେଲା– ସହଙ୍ଗା ଗୋପାଳପୁର ଜଳପାଟ, କନ୍ତପହଁରାର ସରସିଙ୍ଗା ପାଟ, ଘୋଡାବରର ବିଶିଳାପାଟ, ଘୋଳପୁରର ବାମଦିଆ ପୋଖରୀ, ଓସ୍ତିଆର ଓସ୍ତିଆ ପାଟ, ଫୁଲବାଡିର ତଳଫୁଲିଆ ପାଟ ଓ ବିଷ୍ଣୁପୁରର କଣ୍ଡିଆ ଜୋର । ଅଂଶୁପା ହ୍ରଦ ଓ ଏହି ଜଳାଶୟ ବା ଜଳପାଟଗୁଡିକର ଖନନ, ପଙ୍କଉଦ୍ଧାର ଓ ବନ୍ଧ ଉଚ୍ଚା କରାଗଲେ ଅଂଶୁପା ନିକଟସ୍ଥ ପ୍ରାୟ ସମସ୍ତ ଗ୍ରାମର ପ୍ରାୟ ୨୬୦୦ ଏକର ଚାଷଜମି ଜଳସେଚିତ ହେବା ସଙ୍ଗେ ସଙ୍ଗେ ଏ ଅଞ୍ଚଳର ଅର୍ଥନୈତିକ ବିକାଶ ଘଟିପାରିବ । ଅଂଶୁପା ହ୍ରଦର ପାର୍ଶ୍ୱରେ ପ୍ରାୟ ୨୯୦୦ ଏକର ପାହାଡିଆ ଢିପ ଓ ପତିତ ଜମି ରହିଛି । ଏହି ଜମିରେ ଫଳଚାଷ, ବାରମାସି, ସବାଇଘାସ, କାଜୁଚାଷ, ନଡିଆ, ଗୁଆ ଗଛ ରୋପଣ କରାଗଲେ ଏଠାର ଅର୍ଥନୈତିକ ବିକାଶ ସହ ପର୍ଯ୍ୟଟନର ବିକାଶ ଘଟିପାରିବ । ଆଉ ମଧ୍ୟ ଅଂଶୁପାରୁ ପଦ୍ମଫୁଲ, ସିଙ୍ଗଡା ଓ ପଦ୍ମପତ୍ର ସଂଗ୍ରହ କରାଯାଇ ବଜାରରେ ବିକ୍ରି କରାଗଲେ ଏଠାରେ ନିଯୁକ୍ତି ସୁଯୋଗ ସୃଷ୍ଟି ହୋଇପାରିବ । ଅଂଶୁପାର ବିକାଶ

ଘଟିଲେ ଏଠାକାର ସ୍ଥାନୀୟ ଜନସାଧାରଣଙ୍କର ରୋଜଗାର ବୃଦ୍ଧି ହୋଇପାରିବ । ତେଣୁ ଅଂଶୁପା ଓ ଏହାର ଚତୁଃପାର୍ଶ୍ୱରେ ଥିବା ଜଳପାଟରୁ ଉଠା ଜଳସେଚନ, ବିଛୁରିତ ଓ ବିନ୍ଦୁପାତ ଜଳସେଚନ ପଦ୍ଧତିରେ ପତିତ ଜମିକୁ ଜଳସେଚନ କରି ଫୁଲ ଓ ଫଳଚାଷ କରାଗଲେ କର୍ମନିଯୁକ୍ତିର କ୍ଷେତ୍ର ସୃଷ୍ଟି ହୋଇପାରିବ ।

ଅଂଶୁପାରେ ମାଛ, ଚିଙ୍ଗୁଡି ଉତ୍ପାଦନ ଅତି ନଗଣ୍ୟ ରହିଛି । ତେଣୁ ଦଳ ଓ ପଙ୍କଉଦ୍ଧାର ସହ ଜିଆ, କ୍ଲୋରେଲା ଆଦି ଶୈବାଳ ହ୍ରଦ ମଧ୍ୟକୁ ଛାଡିଲେ ମାଛ ସଂଖ୍ୟା ବୃଦ୍ଧି ପାଇପାରିବ । ଏହି ହ୍ରଦରେ ଥିବା ରୋହି, ଭାକୁର, ଶେଉଳ, ଶାଳ, ବାଲିଆ, ଗଡିଶା ଆଦି ମାଛ ଅତି ସ୍ୱାଦିଷ୍ଟ ଅଟେ । ଆଉ ମଧ୍ୟ ଏହି ହ୍ରଦରେ ମୁକ୍ତାଚାଷ, ଚିଙ୍ଗୁଡି ଚାଷ ଓ ଜାଆଁଳ ଉତ୍ପାଦନ କେନ୍ଦ୍ର ସ୍ଥାପନ କରାଗଲେ ଅର୍ଥନୈତିକ କ୍ଷେତ୍ରରେ ବାଙ୍କୀର ଉନ୍ନତି ହୋଇପାରିବ ।

ଅଂଶୁପା ହ୍ରଦ ଓ ଏହାର ଚତୁଃପାର୍ଶ୍ୱର ବିକାଶ ଘଟିଲେ ଏକ ନୂତନ ପର୍ଯ୍ୟଟନ କ୍ଷେତ୍ର ସୃଷ୍ଟି ହୋଇପାରିବ ଓ ପର୍ଯ୍ୟଟନର ବିକାଶରେ ନୂତନ ସୁଯୋଗ ଆସିପାରିବ । ତେଣୁ ନିମ୍ନଲିଖିତ ପଦକ୍ଷେପ ନିଆଗଲେ ପର୍ଯ୍ୟଟନ ମାନଚିତ୍ରରେ ଅଂଶୁପାର ସ୍ଥାନ ଉଚ୍ଚରେ ରହିପାରିବ ।

ଅଂଶୁପା କୂଳରେ ଥିବା ତୃତୀୟାଦେବ ମନ୍ଦିର, ସରଣ୍ଡାଗଡ ଦୁର୍ଗ ଓ ବାଲୁଙ୍କେଶ୍ୱର ଶିବମନ୍ଦିରର ପୁନରୁଦ୍ଧାର ଓ ନବୀକରଣ ଆବଶ୍ୟକ । ହ୍ରଦର ଦକ୍ଷିଣ କୋଣରେ ଥିବା ଡାହାଳିଆ ବନ୍ଧକୁ ଉଚ୍ଚ କରିବା ସହ ଫୁଲଗଛ ଓ ପାର୍କ ନିର୍ମାଣ କରାଗଲେ ଏହାର ସୌନ୍ଦର୍ଯ୍ୟ ବହୁଗୁଣିତ ହେବ । ଅଂଶୁପା ହ୍ରଦର ଚତୁଃପାର୍ଶ୍ୱରେ ପିଚୁରାସ୍ତା ଓ ଚାରିପଟେ ନଡିଆ ଏବଂ ଗୁଆଗଛ ରୋପଣ, କୂଳରେ ଘାସ ଚାଷ ଓ ପାର୍କ ନିର୍ମାଣର ଆବଶ୍ୟକତା ରହିଛି । ଅଂଶୁପା ଜଳକୁ ନିର୍ମଳ ଓ ସଫା କରାଗଲେ ପର୍ଯ୍ୟଟକମାନେ ନୌକା ବିହାରର ଆନନ୍ଦ ନେଇପାରିବେ ଓ ଆଉ ମଧ୍ୟ ଜଳକ୍ରୀଡା ପାଇଁ ସୁବିଧା ସୃଷ୍ଟି ହୋଇପାରିବ । ଶୀତଋତୁରେ ଏଠାକୁ ଦୂରଦୂରାନ୍ତରୁ ହଂସ, ହଂସରାଳି, ଟେଣ୍ଟେଇ, ଡାହୁକ, ପାଣିଚଡେଇ, ଚକୁଆ, ପାଣିକୁଆ, ବଗ ଆଦି ପକ୍ଷୀମାନେ ଆସିଥାଆନ୍ତି, ତେଣୁ ଏଠାରେ ଏକ ପକ୍ଷୀବିହାର ବା ପକ୍ଷୀ ବାସସ୍ଥଳୀ ନିର୍ମାଣର ଜରୁରୀ ଆବଶ୍ୟକତା ରହିଛି । ଏତଦ୍‌ବ୍ୟତୀତ ପର୍ଯ୍ୟଟକମାନଙ୍କୁ ଆକୃଷ୍ଟ କରିବା ପାଇଁ ଅଂଶୁପା କୂଳରେ ଏକ ମୃଗ ବିହାର ସ୍ଥାପନ କରିବା ଆବଶ୍ୟକ । ପର୍ଯ୍ୟଟନର ବିକାଶ ଘଟିଲେ ଏଠାକାର ସ୍ଥାନୀୟ ଶିକ୍ଷିତ ବେକାର ଯୁବକମାନଙ୍କ ପାଇଁ ପରୋକ୍ଷ ଓ ପ୍ରତ୍ୟକ୍ଷ ଭାବରେ ନିଯୁକ୍ତି ସୃଷ୍ଟି ହୋଇପାରିବ ।

ଚିଲିକା ହ୍ରଦ ଉନ୍ନୟନ ନିଗମ ଭଳି ଅଂଶୁପା ହ୍ରଦ ବିକାଶ ନିଗମ ଗଠନ କରାଯାଇ ଅଂଶୁପାର ଉନ୍ନୟନ ପାଇଁ ରାଜ୍ୟ ସରକାର ସ୍ୱତନ୍ତ୍ର ଦୃଷ୍ଟିଦେବା ଆବଶ୍ୟକ । ଏଥିସହ ଇଣ୍ଟରନ୍ୟାସନାଲ ଲେକ୍ ନେଟ୍‌ୱର୍କ (ବିଶ୍ୱସ୍ତରୀୟ ସଂସ୍ଥା) ଆନ୍ତର୍ଜାତୀୟ ଗ୍ଲୋବାଲ ନେଚର ଫଣ୍ଡ, କାନାଡାର ଆନ୍ତର୍ଜାତୀୟ ଉନ୍ନୟନ ସଂସ୍ଥା ଓ କେନ୍ଦ୍ର ସରକାରଙ୍କ ସହାୟତା ଆଣିପାରିଲେ ଏହି ହ୍ରଦର ବିକାଶ ହୋଇପାରିବ । ଏହି ହ୍ରଦର ସୁରକ୍ଷା ଓ ବିକାଶ ପାଇଁ ଅଂଶୁପା ଖନନ, ପଙ୍କଉଦ୍ଧାର, ମୁହାଣ ଖନନ ଓ ଯାନ୍ତ୍ରିକ ପଦ୍ଧତିରେ ଜଳ ନିୟନ୍ତ୍ରଣ ବ୍ୟବସ୍ଥା କରାଯିବା ଦରକାର । ଏହା ଫଳରେ ପର୍ଯ୍ୟଟନ କ୍ଷେତ୍ରରେ ଅଂଶୁପା ସ୍ୱତନ୍ତ୍ର ସ୍ଥାନ ପାଇପାରିବ ।

କଲେଜ ରୋଡ୍
ବାଙ୍କୀ, କଟକ– ୭୫୪୦୦୮



# ଆଚାର୍ଯ୍ୟ ହରିହର

ନିର୍ମଳା କୁମାରୀ ମହାପାତ୍ର

'ଆଚାର୍ଯ୍ୟେ ଥିଲେ ବୋଲି' ଗଳ୍ପଟି (ଲେଖକ–ଅଧ୍ୟାପକ ରାଜକିଶୋର ରାୟ)କୁ ପଢି ଲୋକେ ତାଜୁବ ହୁଅନ୍ତି । ଏମିତି ଅୟସ୍କାନ୍ତଧର୍ମୀ ମଣିଷ ପୁଣି ଥିଲେ, ଯାହାଙ୍କର ଉପସ୍ଥିତି ହିଁ ଚଳନ୍ତା ରେଳ ଗାଡିର ଏକ ଡବାରେ ଥିବା ସବୁ ବର୍ଗର ମଣିଷ ମନକୁ ପୁଣି ବଦଳାଇ ଦେଇ ପାରିଥିଲା । ସେ ବ୍ୟକ୍ତିଙ୍କୁ ପୁଣି ସମସ୍ତେ ମାନ୍ୟ କରୁଥିଲେ । ଚିହ୍ନା–ଅଚିହ୍ନା ନାହିଁ । ସମସ୍ତଙ୍କ ପାଖରେ ସେ ଥିଲେ ଗୁଣୀ, ସମ୍ମାନସ୍ପଦ ଓ ଆଦରଣୀୟ ବ୍ୟକ୍ତିତ୍ୱ । ମୂଲ୍ୟବୋଧର ଅବକ୍ଷୟ କାଳରେ ଏକଥା ପଢୁଥିବା ବା ଶୁଣୁଥିବା ମଣିଷ ହାଁ–କରି ଅନାନ୍ତି ।

'ଆଚାର୍ଯ୍ୟେ' କହିଲେ ପଢୁଆ ଲୋକେ ବୁଝନ୍ତି ସତ୍ୟବାଦୀ ବନବିଦ୍ୟାଳୟର ପଞ୍ଚସଖା ମଧ୍ୟରୁ ଅନ୍ୟତମ ବ୍ୟକ୍ତିତ୍ୱ ହରିହର ଦାସଙ୍କୁ । ଆଚରଣସିଦ୍ଧତାରୁ ସେ ଆଚାର୍ଯ୍ୟ, ଯୋଗ୍ୟତମ ଶିକ୍ଷକ, ଆଚାର୍ଯ୍ୟ ପଦଟି ତାଙ୍କର ଅର୍ଜିତ ଉପାଧି, ରାଜଦତ୍ତ ନୁହେଁ କି ପୈତୃକ ବି ନୁହେଁ ।

ସତ୍ୟବାଦୀ ବନବିଦ୍ୟାଳୟ ଆରମ୍ଭ ହୋଇଥିଲା ପଣ୍ଡିତ ଗୋପବନ୍ଧୁ ଦାସଙ୍କ ଉଦ୍ୟମରେ ସନ ୧୯୦୯ ମସିହାରେ । ସେଇ ବନବିଦ୍ୟାଳୟରେ ଯୋଗ ଦେଇଥିଲେ ପଣ୍ଡିତ ନୀଳକଣ୍ଠ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର, ପଣ୍ଡିତ କୃପାସିନ୍ଧୁ ମିଶ୍ର ଆଉ ଆମର ଆଲୋଚ୍ୟ ଆଚାର୍ଯ୍ୟ ହରିହର (ବା ହରିହର ଦାସ)ଙ୍କ ସହ ଅନ୍ୟ କେତେଜଣ । ବନବିଦ୍ୟାଳୟ ପାଇଁ ହରିହର ହେଲେ ଗାଆଁପୁଅ । କାରଣ ସତ୍ୟବାଦୀ ଗ୍ରାମର ଅଳ୍ପ ଦୂରରେ ଶ୍ରୀରାମଚନ୍ଦ୍ରପୁର ଶାସନରେ ପିତା ମହାଦେବ ବ୍ରହ୍ମାଙ୍କ ପରିବାରରେ ହରିହରଙ୍କ ଜନ୍ମ ୧୨, ଫେବୃଆରୀ, ୧୮୭୯ରେ । ମାତ୍ର ତିନିବର୍ଷ ବୟସରେ ସେ ହୋଇଥିଲେ ମାତୃହରା । ବାପା ମହାଦେବ ବ୍ରହ୍ମା ଦ୍ୱିତୀୟଦାର ଗ୍ରହଣ କଲେ । ଅତଏବ ଘରକୁ ଆସିଲେ ନୂଆ ମାଆ ନାମ ଥିଲା ଶ୍ରଦ୍ଧାଦେବୀ । ସେ ଅତି ଶ୍ରଦ୍ଧାରେ ପୁଅ ହରିହରକୁ ପାଳିଲେ ଯଦିଓ ପରବର୍ତ୍ତୀ କାଳରେ ସେ ନିଜେ ରାମ, ଗୋବିନ୍ଦ ଓ ଶଙ୍କର ନାମରେ ତିନିପୁଅ ସହ ନିଶା ନାମ୍ନୀ ଝିଅଟିର ଜନନୀ ହୋଇଥିଲେ ।

ହରିହର ଗ୍ରାମ ବିଦ୍ୟାଳୟରୁ ପ୍ରାଥମିକ ଶିକ୍ଷା ସମାପ୍ତ କରି ମାସିକ ଟ ୪/– (ଚାରିଟଙ୍କା ମାତ୍ର) ଶିକ୍ଷାବୃତ୍ତି ପାଇ ପୁରୀ ଜିଲ୍ଲା ସ୍କୁଲରେ ପଢିଥିଲେ । ତାଙ୍କ ବାପା ଓ ମାମୁଘର ଅଜା ଚାହୁଁଥିଲେ ଭଲ ପାଠ ପଢୁଥିବା ଏଇ ହରିଟି ଆମର ଓକିଲ ହେଲେ ଉତ୍ତମ ହୁଅନ୍ତା । ପ୍ରବେଶିକା ପାଠ ଏଫ୍.ଏ F.A = First Year in Arts = ଆଜିକାଲିର +2 Arts ବା ପୂର୍ବର I.A ସହ ତୁଳିତ) ପଢି ହରିହର କଲିକତା ଗଲେ ପ୍ଲିଡର ଲାଇସେନ୍ସ (ପି.ଏଲ୍) ପଢିବା ପାଇଁ । ପାଠ ପଢିଲେ । ମାତ୍ର ଓକିଲାତି ପ୍ରତି ଅନାଗ୍ରହରୁ ଶେଷ ପରୀକ୍ଷାଟି ନଦେଇ ସେ ଓଡ଼ିଶା ବାହୁଡିଲେ । ତା'ପରେ ଠିକ୍ ହେଲା କି ହରିହର ଯିବେ ଜାପାନ ଦେଶକୁ କାଚଶିଳ୍ପ ଉପରେ ତାଲିମ ନେବା ପାଇଁ । ପ୍ରୋକ୍ତ କାଚଶିଳ୍ପ ପରି ଔଦ୍ୟୋଗିକ ଶିକ୍ଷାର ବାଧକ ହେଲା ତାଙ୍କର ଚକ୍ଷୁ ରୋଗ । ଅତଏବ ଜାପାନ ଯିବା ନୋହିଲା । ସେ ହେଲେ ପୁରୀ ଜିଲ୍ଲା ସ୍କୁଲର ଶିକ୍ଷକ ।

ସରକାରୀ ଚାକିରି ହରିହରଙ୍କୁ ସନ୍ତୋଷ ଦେଲା ନାହିଁ । ଥରେ କୁଆଡେ ଭାର୍ଗବୀ ନଦୀ ତଟରେ ଗୋପବନ୍ଧୁ ଦାସ, ହରିହର ବ୍ରହ୍ମା (ଆଲୋଚ୍ୟ ଆଚାର୍ଯ୍ୟେ ମହାଶୟ), ଅନନ୍ତ ମିଶ୍ର ଓ ନୀଳକଣ୍ଠ ଦାସ–ଏଇ ଚାରିଜଣ ସଂକଳ୍ପ ନେଇଥିଲେ ନିମ୍ନମତେ ।

'ଆମେ କେହି ସରକାରୀ ଚାକିରି କରିବା ନାହିଁ । ନିଜର ଭରଣପୋଷଣ, ବିଳାସବ୍ୟସନରେ ମନ ଦେବା ନାହିଁ । ଜନ୍ମ ହୋଇ ଦେଶକୁ ଯେଉଁ ଅବସ୍ଥାରେ ଦେଖିଥିଲେ, ମଲାବେଳକୁ ତା'ଠାରୁ ଉନ୍ନତତର ଅବସ୍ଥାରେ ଛାଡିଯିବା । ସେଥିପାଇଁ ବରାବର ପ୍ରଯତ୍ନ କରିବା ।'

ହରିହର ପୁରୀ ଜିଲ୍ଲା ସ୍କୁଲ ଛାଡି ବାଲେଶ୍ୱର ଜିଲ୍ଲାର ନୀଳଗିରି ଗଡଜାତ (ତତ୍କାଳୀନ ଦେଶୀୟ ରାଜ୍ୟ) ରାଜ୍ୟର ପ୍ରସ୍ତାବିତ ହାଇସ୍କୁଲରେ ସହକାରୀ ଶିକ୍ଷକଭାବେ ଯୋଗଦେଲେ । ସେଠାକାର ପ୍ରଧାନ ଶିକ୍ଷକ ଥିଲେ ଉମାଚରଣ ଦାସ, ସେ ଚାକିରି ଛାଡି ଦିଅନ୍ତେ ସେ ପଦବୀରେ ରହିଲେ ଆମର ଗୋପବନ୍ଧୁ ଦାସ ଓରଫ ଦାସେ ଆପଣ । ଆଇନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଗୋପବନ୍ଧୁଜୀ ପ୍ରଧାନ ଶିକ୍ଷକ ପଦ ଛାଡି ଓକିଲାତି କରିବାକୁ ଚାଲିଗଲେ । ଅତଏବ ହରିହର ହେଲେ ବିଦ୍ୟାଳୟର ପ୍ରାଣକେନ୍ଦ୍ର, ସହକାରୀ ପ୍ରଧାନ ଶିକ୍ଷକ । ତାଙ୍କର ପ୍ରଚେଷ୍ଟାକ୍ରମେ ସ୍କୁଲଟି ଭଲରେ ଚାଲିଲା । ଇଂରେଜ ଶାସନ କାଳରେ ସ୍କୁଲ ଭଲ ଚାଲିବାର ଅର୍ଥ ହେଲା ଲୋକମାନେ ମୁକ୍ତି ସଚେତନ ହେବା ଓ ପିଲାଏ ଶିକ୍ଷିତ ହେବା ।

ଲୋକ ସଚେତନ ହେଲେ ପରାଧୀନ ରହିବାକୁ ଚାହିଁବେନି । ନିଜ ଗୋଡରେ ଠିଆ ହେବାକୁ, ନିଜ ଶାସନରେ ରହିବାକୁ ପସନ୍ଦ କରିବେ । ତାହା ହେବ ଇଂରେଜ ଶାସନର ପରିପନ୍ଥୀ । ଅତଏବ ପ୍ରୋକ୍ତ ନୀଳଗିରି ପ୍ରସ୍ତାବିତ ହାଇସ୍କୁଲଟି ତତ୍କାଳୀନ ପଲିଟିକାଲ୍ ଏଜେଣ୍ଟ କବ୍‌ଡେନ୍ ରାମ୍‌ସେଙ୍କର ବିଷଦୃଷ୍ଟିରେ ପଡିଲା । ସେ ନୀଳଗିରିର ରାଜାଙ୍କୁ ବିଦ୍ୟାଳୟ ଉଠାଇ ଦେବା ପାଇଁ ପରାମର୍ଶ ଦେଲେ । ସେକାଳରେ ଦେଶୀୟ ରାଜାମାନେ ନାମକୁମାତ୍ର ରାଜା ବା ଜମିଦାର ଥିଲେ । ପ୍ରକୃତ ଶାସନ ଚାଲୁଥିଲା ରାଜ୍ୟର ପଲିଟିକାଲ୍ ଏଜେଣ୍ଟଙ୍କ ଇଙ୍ଗିତରେ । ଅତଏବ ନୀଳଗିରିରୁ ସ୍କୁଲ ଉଠିଗଲା ୧୯୦୬ ମସିହାରେ । ଆମର ଆଲୋଚ୍ୟ ହରିହରଜୀ କଟକର ପ୍ୟାରିମୋହନ ଏକାଡେମୀର ସହକାରୀ ଶିକ୍ଷକ ହେଲେ । ପ୍ରକାଶ ଥାଉ କି ପ୍ୟାରିମୋହନ ଆଚାର୍ଯ୍ୟ ନାମକ ଜଣେ ସ୍ୱାଧୀନଚେତା ନେତୃସ୍ଥାନୀୟ ବ୍ୟକ୍ତି ପ୍ରୋକ୍ତ ବିଦ୍ୟାଳୟ ବସାଇ ଥିଲେ ୧୮୭୫ ମସିହାରେ । ସେଇ ଏକାଡେମୀରେ ହରିହରଜୀ ଜଣେ ଦକ୍ଷ ଶିକ୍ଷକ ସର୍ବପ୍ରିୟ ଗୁରୁଜୀ ଭାବେ ସାରା କଟକରେ ଜଣାଶୁଣା ହୋଇଗଲେ ଅତି ଅଳ୍ପକାଳ ମଧ୍ୟରେ ।

ବନବିଦ୍ୟାଳୟ ୧୯୦୯ ମସିହାରେ ଗୋପବନ୍ଧୁ ଦାସ ସତ୍ୟବାଦୀରେ ପ୍ରତିଷ୍ଠା କରିଥିଲେ । ତାଙ୍କର ଅନୁରୋଧକ୍ରମେ ହରିହର ୧୯୧୨ ମସିହାରେ କଟକର ପ୍ୟାରିମୋହନ ଏକାଡେମୀ ଛାଡି ବନବିଦ୍ୟାଳୟରେ ଯୋଗ ଦେଲେ । ଐତିହାସିକ ମଣିଷଗଢା କାରଖାନା ହେଲା ସେହି ବନବିଦ୍ୟାଳୟ । ସାରା ଭାରତର ତୁଙ୍ଗ ବ୍ୟକ୍ତିତ୍ୱଗଣ ସେଇ ବିଦ୍ୟାଳୟକୁ ଦେଖିବାକୁ ଆସିଥିଲେ ସେକାଳରେ । ଭଲ କାରଖାନାକୁ ଦରକାର ଭଲ ଯନ୍ତ୍ରୀ । ଭଲ ବିଦ୍ୟାଳୟକୁ ଆବଶ୍ୟକ ଦକ୍ଷ ଶିକ୍ଷକ । ବନବିଦ୍ୟାଳୟ ପରି ଏକ ଆଦର୍ଶ ଶିକ୍ଷାନୁଷ୍ଠାନର ଦକ୍ଷ ବ୍ୟକ୍ତିତ୍ୱ ଥିଲେ ହରିହର ମହାଶୟ । ପାଠପଢା, ଛାତ୍ରାବାସ ପରିଚାଳନା, ପାଠ୍ୟପୁସ୍ତକ ପ୍ରକାଶନ, ପିଲାମାନଙ୍କର ଚରିତ୍ର ଗଠନ ସହ ଗୋଟିଏ ସମୟରେ ବିଦ୍ୟାଳୟର ପ୍ରଧାନ ଆଚାର୍ଯ୍ୟ ଦାୟିତ୍ୱ ଗ୍ରହଣ କରି ସେ ସ୍କୁଲ କାର୍ଯ୍ୟରେ ତଲ୍ଲୀନ ହୋଇଗଲେ ଯେପରି ।

ଜାତୀୟତାବାଦୀ ଶିକ୍ଷା ପ୍ରଦାନର ଗବେଷଣାଗାର ଥିଲା ପ୍ରୋକ୍ତ ବନବିଦ୍ୟାଳୟ, ଯାହାର ଥିଲା ନିଜସ୍ୱ ପ୍ରକାଶନ ସଂସ୍ଥା । ପାଠ୍ୟପୁସ୍ତକର ପ୍ରକାଶକ ଥିଲେ ହରିହର ମହାଶୟ । ନୀତି ଶିକ୍ଷାର ଅଭ୍ୟାସ ପୁସ୍ତିକା ସ୍ୱଳ୍ପ ମୂଲ୍ୟରେ ବିଦ୍ୟାର୍ଥୀମାନଙ୍କୁ ସୁଲଭ ହେଉଥିଲା ତାଙ୍କ ଇଙ୍ଗିତରେ । ତାଙ୍କର ଆଚରଣ ସିଦ୍ଧତା, ପାଠଦାନରେ ନିପୁଣତା, ଶୁଦ୍ଧ ବିଚାରଧାରାରୁ ଲୋକେ ତାଙ୍କୁ ଆଚାର୍ଯ୍ୟେ ବୋଲି ଡାକୁଥିଲେ । ତାଙ୍କ ଯତ୍ନରେ ରୋଗରୁ ଆରୋଗ୍ୟ ଲଭିବେ ବୋଲି ପିଲାଏ ମାଆ-ବାପାଙ୍କ ସେବାକୁ ଏଡି ଘରୁ ବନବିଦ୍ୟାଳୟର ଛାତ୍ରାବାସକୁ ଚାଲି ଆସୁଥିଲେ । ଚରିତ୍ର ଗଠନ ପ୍ରତି ତାଙ୍କର ନଜର ଥିଲା ଅତି ତୀକ୍ଷ୍ଣ । ଉତ୍ତମ ଗଣିତ ଶିକ୍ଷକ ଭାବେ ସେ ଥିଲେ ଅଞ୍ଚଳରେ ସୁବିଦିତ । ସେ ମଧ୍ୟ ଜଣେ ଦକ୍ଷ ଇଂରାଜୀ ଶିକ୍ଷକ ଥିଲେ । ତା'ର ପ୍ରମାଣ ହେଲା ତାଙ୍କର ପୁସ୍ତକ- Child's Easy First Grammar. ଆଜି ମଧ୍ୟ ଏ ବହିର ଆଦର କମିନାହିଁ । ବରଂ ବଢିଛି ।

ସନ ୧୯୧୨ରୁ ୧୯୨୧ ଯାଏ ବନବିଦ୍ୟାଳୟର ପିଲାମାନେ ଭଲ ମଣିଷ ହେବାର ସବୁ ରକମ ପ୍ରେରଣା ଆଚାର୍ଯ୍ୟଙ୍କଠାରୁ ପାଉଥିଲେ । ଦାସେ ଆପଣ (ଗୋପବନ୍ଧୁ ଦାସ) ଅସହଯୋଗ ଆନ୍ଦୋଳନରେ ଯୋଗ ଦେବାରୁ ତତ୍କାଳୀନ ସରକାର ବନବିଦ୍ୟାଳୟକୁ ସନ୍ଦେହ ଦୃଷ୍ଟିରେ ଦେଖିଲେ । କ୍ରମେ ତାହା (ବନବିଦ୍ୟାଳୟ) ବନ୍ଦ ହୋଇଗଲା । ଅତଏବ ଆଚାର୍ଯ୍ୟ ହରିହର ହେଲେ ସ୍ୱାଧୀନତା ସଂଗ୍ରାମୀ । ସବୁ କାମରେ ତାଙ୍କର ପ୍ରୟାସ ଓ ନିଷ୍ଠା ପରିଲକ୍ଷିତ ।

ଆଚାର୍ଯ୍ୟ ହରିହର ୧୯୨୧ରୁ ୧୯୪୨ ଯାଏ ପୂର୍ଣ୍ଣ ପ୍ରାଣରେ ସ୍ୱାଧୀନତା ସଂଗ୍ରାମରେ ଲାଗି ପଡିଲେ । ଫଳତଃ ବାରମ୍ବାର ଜେଲ ଗଲେ । ଆଚାର୍ଯ୍ୟ ମହାଶୟ ଯେଉଁଠିକୁ ଯିବେ, ସେଠାରେ ଆଚରଣ ଶିକ୍ଷା ଦେବେ । ଢିଙ୍କି ସ୍ୱର୍ଗକୁ ଗଲେ ବି ସେଇଠି ଧାନରୁ ଚୋପା ଛଡାଇ ଖାଦ୍ୟ ଉପଯୋଗୀ କରିପାରିବ । ସେହି ନୀତିରେ ଆଚାର୍ଯ୍ୟେ ଜେଲଖାନା ଭିତରେ ଅପଢ କଇଦୀମାନଙ୍କୁ ପଢାଇଲେ । ନିରକ୍ଷରକୁ ସାକ୍ଷର କରାଇବାର ମହତ୍ ଉଦ୍ଦେଶ୍ୟ ତାଙ୍କର କାରାଗାର ମଧ୍ୟରେ ସାଧିତ ହୋଇଗଲା ।

ସେ ରାଜନୀତିକ ସହବନ୍ଦୀମାନଙ୍କୁ ଗୀତା ଓ ଉପନିଷଦ ପଢ଼ି ଶୁଣାଉ ଥିଲେ । କାରାଗାର ମଧ୍ୟରେ ହିଁ ଆଚାର୍ଯ୍ୟ ମହାଶୟ ଶ୍ରୀମଦ୍ ଭଗବଦ୍ ଗୀତାର ଅନୁବାଦ କାର୍ଯ୍ୟ କରିଥିଲେ, ଯାହାର ସୁଫଳ ଏବେ ଓଡ଼ିଶା ଭିତରେ ଓ ବାହାରେ ଲକ୍ଷ ଲକ୍ଷ ଗୀତାପ୍ରେମୀ ଲାଭ କରୁଛନ୍ତି । ଓଡ଼ିଆ ଭାଷାରେ ଏହା ଏକ ଅମୂଲ୍ୟ ସମ୍ପଦ । ହଜାରିବାଗ (ସେ କାଳରେ ବିହାର ଏବେ ଝାଡଖଣ୍ଡ ରାଜ୍ୟରେ) ଜେଲ୍‌ରେ ସେ ନିରକ୍ଷରମାନଙ୍କୁ ସାକ୍ଷର କରିବାର ଦାୟିତ୍ୱ ନେଇଥିଲେ ।

ସନ ୧୯୩୦ର ଲବଣ ସତ୍ୟାଗ୍ରହରେ ଆଚାର୍ଯ୍ୟ ହରିହର ଥିଲେ ଅଗ୍ରଣୀ । ଇଞ୍ଚୁଡିରେ ଲୁଣ ମାରିବାକୁ ଯାଇ ସେ ଜେଲ୍‌ଦଣ୍ଡ ଭୋଗିଥିଲେ । ଗାନ୍ଧୀ-ଇର୍‌ୱିନ୍ ଚୁକ୍ତି ହେଲା ୧୯୩୧ ମସିହାରେ । ତାହା ଫଳରେ ଅନେକ ସ୍ୱାଧୀନତା ସଂଗ୍ରାମୀ ମୁକ୍ତି ପାଇଲେ । ଆଚାର୍ଯ୍ୟେ ମଧ୍ୟ ସେଇ ନିୟମରେ ମୁକ୍ତ ହେଲେ । ପୁନରାୟ ୧୯୩୨ ମସିହାର ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇ ହେଲେ ବନ୍ଦୀ । ଭାରତଛାଡ ଆନ୍ଦୋଳନ (୧୯୪୨)ରେ ଯୋଗଦେଇ ସେ କାରାରୁଦ୍ଧ ହୋଇଥିଲେ ଓ ୧୯୪୪ରେ ମୁକ୍ତି ପାଇଥିଲେ । ସେତେବେଳକୁ ତାଙ୍କୁ ପାଖାପାଖି ୬୪ ବର୍ଷ ବୟସ ।

ଆଚାର୍ଯ୍ୟ ହରିହରଙ୍କ ଷାଠିଏ ବର୍ଷ ପୂର୍ତ୍ତି (୧୯୩୯ ମସିହା)ରେ ତାଙ୍କୁ ଏକ ଅଭିନନ୍ଦନ ଗ୍ରନ୍ଥ ଓ ଏକ ଟଙ୍କାଥଳି ଅର୍ପଣ କରାଗଲା । ହରିଜନ୍ (ବର୍ତ୍ତମାନ ପାଇଁ ଦଳିତ ଶବ୍ଦ ପ୍ରଯୁକ୍ତ)ଙ୍କ ବିକାଶ ପାଇଁ ବିନମ୍ରତାର ସହ ସେ ଟଙ୍କାଥଳିଟି ନେଲେ । 'ଅଭିନନ୍ଦନ ଗ୍ରନ୍ଥ' କ'ଣ ହେବ ବୋଲି କହିଥିଲେ । ଏହା ତାଙ୍କର ନିରହଙ୍କାରିତାର ଚିହ୍ନ । ଉତ୍କଳ ବିଶ୍ୱବିଦ୍ୟାଳୟ ତରଫରୁ ତାଙ୍କୁ ପ୍ରଦତ୍ତ ସମ୍ମାନଜନକ ଡକ୍ଟରେଟ୍ ଉପାଧିକୁ ସେ ନମ୍ରତାର ସହ ଫେରାଇ ଦେଇଥିଲେ । ଏସବୁ ଥିଲା ତାଙ୍କର ଉଦାରତାର ଚିହ୍ନ ।

ଓଡ଼ିଶାରେ ମହାତ୍ମା ଗାନ୍ଧୀଙ୍କ ପଦଯାତ୍ରାରେ ଆଚାର୍ଯ୍ୟେ ଥିଲେ ସହଯାତ୍ରୀ । ଧୂଳିମାଟିର ସନ୍ଥ ଗୋପବନ୍ଧୁ ଚୌଧୁରୀ, ତାଙ୍କର ପତ୍ନୀ ମାଆ ରମାଦେବୀ ଆଦିଙ୍କ ସହ ପାଦ ମିଳାଇ ସେ ସର୍ବୋଦୟର ବାର୍ତ୍ତା ପ୍ରଚାର କରିଥିଲେ । ସେଇ କ୍ରମରେ ଅସୁସ୍ଥତା ସତ୍ତ୍ୱେ ସେ ସାରା ଓଡ଼ିଶା ପରିକ୍ରମା କରିଥିଲେ । ଅବିଶ୍ରାନ୍ତ ଶ୍ରମରୁ ପୀଡିତ ହେଲେ ହେଁ ସେ ସେବା କାର୍ଯ୍ୟରୁ ଓହରି ଯାଇ ନଥିଲେ ।

ବିନୋବା ଭାବେ ଥିଲେ ଭୂଦାନ ଆନ୍ଦୋଳନର ସୂତ୍ରଧର । ସାରା ଭାରତବର୍ଷ ବୁଲିବୁଲି ସେ ଧନୀ ଓ ଜମିଦାରମାନଙ୍କୁ ବୁଝାଇ ସେମାନଙ୍କର ହୃଦୟର ପରିବର୍ତ୍ତନ କରି ଗରିବ ଭୂମିହୀନଙ୍କ ପାଇଁ ସେ ଜମିଦାନ ସଂଗ୍ରହ କରୁଥିଲେ । ପରବର୍ତ୍ତୀ କାଳରେ ଏହା ଗ୍ରାମଦାନ ଓ ସର୍ବସ୍ୱ ଦାନରେ ପରିଣତ ହୋଇଥିଲା । ଓଡ଼ିଶାରେ ଭୂ-ଦାନ ଆନ୍ଦୋଳନର ନେତୃତ୍ୱ ନେଇଥିବା ଶ୍ରେଷ୍ଠ ବ୍ୟକ୍ତିତ୍ୱମାନଙ୍କ ମଧ୍ୟରେ ଅନ୍ୟତମ ଥିଲେ ଆଚାର୍ଯ୍ୟ ହରିହର । ଏତଦ୍‌ବ୍ୟତୀତ ନାରୀ ଜାଗରଣ, ଅସ୍ପୃଶ୍ୟତା ନିବାରଣ, ସୂତ୍ରଯଜ୍ଞ, ଗ୍ରାମ ସଫେଇ, ମାଦକଦ୍ରବ୍ୟ ପରିତ୍ୟାଗର ଆନ୍ଦୋଳନ ଆଦିରେ ସେ ଥିଲେ ଆଗୁଆ । ସେ ଯୁଆଡେ ଯାଉଥିଲେ, ତାଙ୍କ ଚରଖାଟିକୁ ନେଇ ଯାଉଥିଲେ । ସୂତା କାଟୁଥିଲେ । ଅନ୍ୟମାନଙ୍କୁ 'କାଟିପିନ୍ଧ ଓ କୁଟିଖାଅ'ର ବାର୍ତ୍ତା ଶୁଣାଉ ଥିଲେ । ସବୁଦିନ ଖଦି ପିନ୍ଧୁଥିବା ଏଇ ମହାତ୍ମାଙ୍କର ଭୋଜନ ରୁଚି ଓ ଜୀବନଯାପନ ପ୍ରଣାଳୀ ଥିଲା ଅତି ସରଳ । ସ୍ୱାଧୀନତା ସଂଗ୍ରାମରେ ଗୋପବନ୍ଧୁ ଦାସ ହଜାରିବାଗ ଜେଲରେ ବନ୍ଦୀ ଥିବାବେଳେ ଦୈନିକ 'ସମାଜ'ର ସମ୍ପାଦକ ହେବ କିଏ ? ସମାଧାନ ଥିଲା ହରିହରଙ୍କ ହାତରେ । ବିସ୍ମୟ ଲାଗିଲେ ମଧ୍ୟ ଏହା ସତ୍ୟ ଯେ ଆଚାର୍ଯ୍ୟେ ସେତେବେଳେ ଥିଲେ ଦୈନିକ ସମ୍ବାଦପତ୍ର 'ସମାଜ'ର ସମ୍ପାଦକ । ସ୍ୱାଧୀନତା ସଂଗ୍ରାମରେ ୧୯୨୧ରୁ ୧୯୪୫ ଯାଏ ଦୀର୍ଘ ପଚିଶବର୍ଷ କାଳ ନିଷ୍ଠାପର କର୍ମୀ ଥିଲେ ହେଁ ସେ ମହାତ୍ମା ଗାନ୍ଧୀଙ୍କ ପରି ପ୍ରତ୍ୟକ୍ଷ ରାଜନୀତିକ ଶାସନ ବ୍ୟବସ୍ଥାରୁ ଦୂରରେ ଥିଲେ । ମନ୍ତ୍ରୀ ହୋଇ ନଥିଲେ କି ସରକାରୀ ଅର୍ଥରେ ପ୍ରତିପୋଷିତ ହୋଇ ନଥିଲେ । ତାଙ୍କର ସହକର୍ମୀ ପଣ୍ଡିତ ନୀଳକଣ୍ଠ ଦାସ ହୋଇଥିଲେ ଓଡ଼ିଶା ବିଧାନସଭାର ବାଚସ୍ପତି । ପଣ୍ଡିତ ଗୋଦାବରୀଶ ମିଶ୍ର ହୋଇଥିଲେ ଶିକ୍ଷାମନ୍ତ୍ରୀ । ଅନ୍ୟତମ ସହଯୋଗୀ ଲିଙ୍ଗରାଜ ମିଶ୍ର ହୋଇଥିଲେ ମାନ୍ୟବର ଆଇନମନ୍ତ୍ରୀ । ସମସ୍ତେ ଆଚାର୍ଯ୍ୟ ହରିହରଙ୍କୁ ମାନ୍ୟ କରୁଥିଲେ । ସେମାନଙ୍କ ବ୍ୟତୀତ ଅନ୍ୟମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀମାନେ ମଧ୍ୟ ଆଚାର୍ଯ୍ୟଙ୍କ ପାଦସ୍ପର୍ଶ କରି ଆଶିଷ ଭିକ୍ଷା କରୁଥିଲେ । ଏସବୁ ଥିଲା ଆଚାର୍ଯ୍ୟ ମହାଶୟଙ୍କର ମହାନତା ।

'ଚଲ୍‌ତେ ସାଧୁ, ବହତେ ଜଲମ୍'- ଏମାନଙ୍କୁ ମଳିନତା ସ୍ପର୍ଶ କରିପାରେ ନାହିଁ । ଯାଯାବରଧର୍ମୀ ଆଚାର୍ଯ୍ୟ ମହାଶୟଙ୍କୁ ମଳିନତା ସ୍ପର୍ଶ କରିପାରି ନଥିଲା, କାରଣ ସେ ଥିଲେ ଚଲ୍‌ତେ ସାଧୁଧର୍ମୀ ସନ୍ନ୍ୟାସୀ । ସବୁ ତ୍ୟାଗ କରି ସମସ୍ତଙ୍କ କଲ୍ୟାଣ ପାଇଁ ସେ ସେବାକାର୍ଯ୍ୟ ଚାଲୁ ରଖିଥିଲେ । ନିର୍ଦ୍ଦିଷ୍ଟ କୌଣସି ସେବାଶ୍ରମ ସହ ବାନ୍ଧି ହୋଇ ନଥିଲେ । ବରଂ ସବୁ ସେବାଶ୍ରମ ପ୍ରତି ତାଙ୍କର ଥିଲା ଦୟା, ଦାନ ଓ ତୀତିକ୍ଷାର ଦୃଷ୍ଟି । ଗୋଟିଏ ଛୋଟିଆ ବାକ୍ସ, ବିଛଣାଟିଏ ଓ ଚରଖା ଖଣ୍ଡେ ଧରି ସେ ନିଜେ ଆପଣା କର୍ମ ପରିସରରେ ପହଞ୍ଚି ଯାଉଥିଲେ ।

ବାର୍ଦ୍ଧକ୍ୟରେ ଆଚାର୍ଯ୍ୟ ହରିହରଙ୍କୁ କିଛି ଦିଶୁ ନଥିଲା, ଶୁଭୁ ନଥିଲା କି ସେ କିଛି କହିପାରୁ ନଥିଲେ । ତାଙ୍କର ସ୍ମୃତିଶକ୍ତି

ପ୍ରାୟ ନଥିଲା । କେନ୍ଦ୍ରାପଡାର ସଚ୍ଚିଦାନନ୍ଦ ମହାନ୍ତି ନାମକ ଜନୈକ ସର୍ବୋଦୟ କର୍ମୀ ଥିଲେ ତାଙ୍କର ମାଆ ପରି । ଶିଶୁ ପାଇଁ ମାଆର ଭୂମିକା ଯାହା, ଆଚାର୍ଯ୍ୟ ହରିହରଙ୍କ ପାଇଁ ସଚ୍ଚିମହାନ୍ତି ମହୋଦୟ ଥିଲେ ତାହା । ସଚ୍ଚି ମହାନ୍ତିଙ୍କ ସେବାଧର୍ମ ପାଇଁ ତାଙ୍କୁ ବାରମ୍ବାର ସ୍ମରଣ କରାଯାଏ, ସମ୍ମାନ ଦିଆଯାଏ ।

ଆଚାର୍ଯ୍ୟଙ୍କର ଦେହାନ୍ତ ହୁଏ ୨୧, ଫେବୃଆରୀ ୧୯୭୧ ମସିହାରେ । ତାଙ୍କର ଶବ ଶୋଭାଯାତ୍ରା କଟକରୁ ବାହାରି ଭୁବନେଶ୍ୱର–ବାଣୀବିହାର–ପୁରୀ ଦେଇ ସତ୍ୟବାଦୀ ବନବିଦ୍ୟାଳୟ ପରିସରରେ ପହଞ୍ଚି ଥିଲା । ବକୁଳ ଛୁରିଅନା କୁଞ୍ଜରେ ତାଙ୍କର ସମାଧି ମନ୍ଦିର ରହିଅଛି । ପଞ୍ଚସଖାଙ୍କର ସ୍ମୃତିପୀଠ ଆମକୁ ଦେଶସେବାର ପ୍ରେରଣା ଦିଏ ।

ଏକାଧାରରେ ଆଚାର୍ଯ୍ୟ ହରିହର ଥିଲେ ଶିକ୍ଷକ, ଶିକ୍ଷାନୁଷ୍ଠାନର ମୁଖ୍ୟ ପ୍ରଧାନ ଆଚାର୍ଯ୍ୟ, ବିଧବାଶ୍ରମର ପରିଚାଳକ, ସତ୍ୟାଗ୍ରହୀମାନଙ୍କର ସେନାପତି, ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି, ହରିଜନ ସେବକ ସଂଘ ତଥା ମୌଳିକ ଶିକ୍ଷା ପରିଷଦର ସଭାପତି, ପତ୍ରକାର, ଆଧାତ୍ମିକ ଶାସ୍ତ୍ର ଗୀତାର ଭାଷ୍ୟକାର, ପାଠ୍ୟପୁସ୍ତକ ବିରଚକ ଓ ପ୍ରକାଶକ । ଏଥି ସହିତ ତାଙ୍କର ଅନ୍ୟତମ ଭୂମିକା ଥିଲା ସର୍ବୋଦୟ ଆନ୍ଦୋଳନରେ ନେତୃତ୍ୱ ନେବା । ନିରହଙ୍କାରିତା ଓ ସରଳ ଚଳଣୀ ଥିଲା ତାଙ୍କ ଜୀବନର ଶ୍ରେଷ୍ଠ ବିଭବରାଜି । ତାଙ୍କର ବ୍ୟକ୍ତିତ୍ୱ ଆକଳନରେ ଲବଣ ପ୍ରତିମା ସମୁଦ୍ରର ଗଭୀରତା ମାପିବାକୁ ଯାଇ ନିଜେ ନିମଜ୍ଜିତ ହେଲା ପରି ଲେଖିକା ଅସ୍ମିତା ଗର୍ଭରେ ଲୀନ ହୋଇ ଯାଆନ୍ତି । କାରଣଟା ସ୍ପଷ୍ଟ । ଆଚାର୍ଯ୍ୟ ହରିହର ଥିଲେ ଅମାପ ଗୁଣବତ୍ତାର ଅଧିକାରୀ ।

ଆଚାର୍ଯ୍ୟ ହରିହରଙ୍କ ତିରୋଧାନରେ ଜଣେ ମନ୍ତବ୍ୟ ଦେଲେ– 'ଗୋଟିଏ ଯୁଗର ଅବସାନ ଘଟିଲା' । ଏପରି କହିବାର ଉଦ୍ଦେଶ୍ୟ ହେଲା ଓଡ଼ିଶାରେ ସେବାକାର୍ଯ୍ୟ, ଶିକ୍ଷା– ସଚେତନତାର ଅଗ୍ରଣୀ ଭୂମିକାରେ ଥିବା ପ୍ରୋକ୍ତ ପଞ୍ଚସଖା(ଗୋପବନ୍ଧୁ, ନୀଳକଣ୍ଠ, ଗୋଦାବରୀଶ, କୃପାସିନ୍ଧୁ ଓ ହରିହର)ଙ୍କ ମଧ୍ୟରୁ ପ୍ରଥମ ଚାରିଜଣଙ୍କର ଦେହାନ୍ତ ଆଗରୁ ହୋଇ ସାରିଥିଲା । ଶେଷରେ ସତ୍ୟର ପୂଜାରୀ ଆଚାର୍ଯ୍ୟ ହରିହରଙ୍କର ଦେହାବସାନରେ ସତେ ଯେପରି ଗୋଟିଏ ଯୁଗର ପରିସମାପ୍ତି ଘଟିଲା । ଏହା ହୋଇପାରେ ମନ୍ତବ୍ୟର ଅନୁଶୀଳନ ।

ନ୍ୟାୟମୂର୍ତ୍ତି ହରିହର ମହାପାତ୍ର ଆଚାର୍ଯ୍ୟଙ୍କ ସମ୍ପର୍କରେ କହନ୍ତି– 'ମତଭେଦର ତିକ୍ତତା, ଦୃଷ୍ଟିକୋଣର ଭିନ୍ନତା, କର୍ମଧାରାରେ ପାର୍ଥକ୍ୟ, କୃତିତ୍ୱର ଅହଂକାର, କ୍ଷମତାର ଆସ୍ଫାଳନ ଆଚାର୍ଯ୍ୟ ହରିହର ଦାସଙ୍କ ଶୁଚିମନ୍ତ ଜୀବନରେ କେତେବେଳେ କୌଣସି ଦ୍ୱନ୍ଦ୍ୱ ଉଠାଇ ପାରିନାହିଁ ।' ପ୍ରକାଶଥାଉ କି ନ୍ୟାୟମୂର୍ତ୍ତି ହରିହର ମହାପାତ୍ର ଥିଲେ ବନବିଦ୍ୟାଳୟର ଛାତ୍ର ।

ଐତିହାସିକ କୃପାସିନ୍ଧୁ ହୋତା କହନ୍ତି– 'ଗାନ୍ଧିଜୀ ଓ ଆଚାର୍ଯ୍ୟ ହରିହର– ଉଭୟଙ୍କ ଚିନ୍ତାରେ ପୂରାପୂରି ମେଳ । କେବଳ ଏତିକି ପ୍ରଭେଦ ଯେ ଗାନ୍ଧୀଙ୍କୁ ଲୋକେ ଗୁଳି କରି ମାରି ଥିଲେ । କିନ୍ତୁ ଆଚାର୍ଯ୍ୟ ହରିହରଙ୍କୁ କେହି ଦିନେ ଟେକାଟିଏ ପକାଇବା ପାଇଁ ଦୁଃସାହସ କରିନାହିଁ ।'

ଜାତିଭେଦର ଊର୍ଦ୍ଧ୍ୱରେ ରହି ବହୁ ସମାଜ ସଂସ୍କାର ଆଣିଥିବା ଆଚାର୍ଯ୍ୟ ହରିହରଙ୍କର ଅନୁବାଦ କାର୍ଯ୍ୟ ପ୍ରତି ଦୃଷ୍ଟି ନିକ୍ଷେପ କଲେ ବୁଝିହେବ ଯେ ସେ କେତେ ଉଚ୍ଚକୋଟୀର ଜ୍ଞାନୀ ଥିଲେ । ଛାନ୍ଦୋଗ୍ୟ ଉପନିଷଦର ଟୀକା ତାଙ୍କ ଜୀବନକାଳ ମଧ୍ୟରେ ପ୍ରକାଶିତ ହୋଇଥିଲା । ତାଙ୍କ ରଚିତ ଅନ୍ୟାନ୍ୟ ଉପନିଷଦର ଟୀକା ଓ ସେଗୁଡିକର ଓଡ଼ିଆ ଅନୁବାଦ ସଂଗୃହୀତ ହୋଇ ୧୯୭୪ ମସିହାରେ ପ୍ରକାଶିତ ହୋଇଥିଲା । ସେଥିରେ ରହିଛି ଈଶାବାସ୍ୟୋପନିଷଦ, କଠୋପନିଷଦ, କେନୋପନିଷଦ, ପ୍ରଶ୍ନୋପନିଷଦ, ମାଣ୍ଡୁକ୍ୟୋପନିଷଦ, ମୁଣ୍ଡକୋପନିଷଦର ମନ୍ତ୍ର, ସରଳଟୀକା ଓ ସେଗୁଡିକର ଓଡ଼ିଆ ଅନୁବାଦ । ଭାଷା–ସାହିତ୍ୟ–ସଂସ୍କୃତି–ସମାଜ–ରାଜ୍ୟ ତଥା ଦେଶର କଲ୍ୟାଣକାରୀ ମନୀଷି ଆଚାର୍ଯ୍ୟ ହରିହରଙ୍କ ପ୍ରତି ସଶ୍ରଦ୍ଧ ଭକ୍ତିଅର୍ଘ୍ୟ ।

ସ୍ୱସ୍ତି ପନ୍ଥାମନୁଚରେମ ସୂର୍ଯ୍ୟାଚନ୍ଦ୍ରମସାବିବ
ପୁନର୍ଦ୍ଦବତାଘ୍ନତା ଜାନତା ସଂ ଗମେମହି ।

ମଣ୍ଡଳ ୫, ସୂକ୍ତ ୫୧, ମନ୍ତ୍ର ୧୫/ଋଗ୍‌ବେଦ

ଅର୍ଥାତ୍– ଆମ୍ଭେମାନେ ସୂର୍ଯ୍ୟ ଚନ୍ଦ୍ର ପରି କଲ୍ୟାଣକାରୀ ମାର୍ଗକୁ ଅନୁସରଣ କରୁ । ବାରମ୍ବାର ଦାନଶୀଳ, ଅହିଂସକ, ପରସ୍ପର ଦୃଷ୍ଟିକୋଣ ବୁଝୁଥିବା ବ୍ୟକ୍ତିଙ୍କ ସହିତ ସଙ୍ଗତି କରୁ ।

ଏଇ ବିଚାରରେ ଆଚାର୍ଯ୍ୟ ହରିହରଙ୍କ ଜୀବନାଦର୍ଶ ଆମ୍ଭମାନଙ୍କର ଅନୁସରଣୀୟ ।

ସେକ୍ଟର–୨/୪୨୬
ନୀଳାଦ୍ରିବିହାର, ଭୁବନେଶ୍ୱର

# ଆଜୀବନ ସେବିକା ମା' ରମାଦେବୀ

ପଣ୍ଡିତ ତ୍ରିଲୋଚନ ମିଶ୍ର

ମୋଗଲ, ମରହଟ୍ଟା, ଇଂରେଜ ରାଜୁତି ଉତ୍କଳର ସାମାଜିକ, ଆର୍ଥିକ ସ୍ଥିତିକୁ ପ୍ରଭାବିତ କରିଥିଲା । ସବୁଠାରୁ ଅଧିକ ଅବହେଳିତ ହୋଇଥିଲେ ମହିଳାମାନେ । ଦାଣ୍ଡ ଏରୁଣ୍ଡି ଡେଇଁ ଗାଁ ଗଣ୍ଡା, ସାହିପଡିଶାଙ୍କ ସୁଖ ଦୁଃଖରେ ସମଭାଗି ହେବାକୁ ମଧ୍ୟ ତା'ର ସ୍ୱାଧୀନତା ନଥିଲା । ରକ୍ଷଣଶୀଳ ଚଳଣିର ଦ୍ୱାହି ଦେଇ ନାରୀର ସମସ୍ତ ଅଧିକାର ଲୁଣ୍ଠନ କରାଯାଇଥିଲା । ନାରୀ ଜାତିର ଏଭଳି ଏକ ଅସମୟରେ ଜନ୍ମ ନେଇଥିଲେ କେତେଜଣ ପ୍ରାତଃ ସ୍ମରଣୀୟା ନାରୀନେତ୍ରୀ । ସେମାନଙ୍କ ମଧ୍ୟରେ ଥିଲେ ମା' ରମାଦେବୀ, ମା' ଶାରଳା ଦେବୀ, ମା' ମାଳତୀ ଦେବୀ, ମା' ଅନ୍ନପୂର୍ଣ୍ଣା ଦେବୀ । କେବଳ ସେମାନଙ୍କର ଦୃଢ ମନୋବଳ, ସମାଜ ସେବା ପାଇଁ ସଂକଳ୍ପ ଓ ନିରବିଚ୍ଛିନ୍ନ ପ୍ରଚେଷ୍ଟା ଅମା ଅନ୍ଧକାର ମଧ୍ୟରୁ ଉତ୍କଳ ରମଣୀମାନଙ୍କୁ ଆଶାର ଆଲୋକକୁ ଆଣି ପାରିଥିଲା । ସେ ପୂର୍ବ ସ୍ଥିତି ଆଜି ନାହିଁ । ଶିକ୍ଷା, ସଂସ୍କାର, ସୁରକ୍ଷା, ସ୍ୱଅଧିକାର ରକ୍ଷା ପାଇଁ ନାରୀ ଜାତି ସତତ ତତ୍ପର । ଉତ୍କଳର ନାରୀ ଜାତିର ମୁଖ୍ୟ ପୁରୋଧା ମା' ରମାଦେବୀଙ୍କୁ କହିଲେ ଅତ୍ୟୁକ୍ତି ହେବନାହିଁ । ଜୀବନର ସମସ୍ତ ପ୍ରାଚୁର୍ଯ୍ୟ ପରିହାର କରି କୌଣସି ମାନ, ସମ୍ମାନ, ପ୍ରତିଷ୍ଠା ପଦ



ପଦବୀର ମୋହ ନରଖି ମା' ରମାଦେବୀ ସମର୍ପିତ ଦେଶ ସେବାର ଆଦର୍ଶ ହୋଇଯାଇଛନ୍ତି । ରାଜ୍ୟରେ ବଢ଼ି, ମରୁଡ଼ି, ମହାମାରୀ ପଡିଲେ ମହିଳା, ଶିଶୁ, ଅନାଥ, ଅବହେଳିତମାନଙ୍କୁ ଅବହେଳା କରାଗଲେ ମା' ରମାଦେବୀଙ୍କର ପ୍ରତିରୋଧର ସ୍ୱର ଉଠୁଥିଲା । ଅନ୍ୟାୟ ବିରୁଦ୍ଧରେ ଲଢ଼ି ସେ ନ୍ୟାୟ ଆଣି ଦେବାରେ ଆନନ୍ଦ ପାଉଥିଲେ । ରାଜ୍ୟ ତଥା ଦେଶର ଦୁର୍ଦ୍ଦିନରେ ସମସ୍ତେ ମା'ଙ୍କୁ ସ୍ମରଣ କରନ୍ତି । ମୋର ମନେ ଅଛି, ୧୯୯୫ ମସିହାର ବଢ଼ି କଥା । ରମାଦେବୀଙ୍କର ଆଦର୍ଶରେ ଗଢ଼ା ମୋର ପିଉସୀ ନାନୀ ଇନ୍ଦୁମତୀ ଦେବୀଙ୍କ ସହ ତାଙ୍କ କଟକ ବାସଭବନକୁ ଯାଇଥାଏ । ମହିଳା କର୍ମୀମାନଙ୍କୁ ବନ୍ୟାଞ୍ଚଳ ସେବା ଦାୟିତ୍ୱ ଦିଆଯାଉଥାଏ । ନାନୀଙ୍କୁ କାକଟପୁର ଯିବା ପାଇଁ ନିର୍ଦ୍ଦେଶ ମିଳିଲା । ସମସ୍ତଙ୍କ ପାଇଁ ଗୋଟିଏ ଉପଦେଶ- ମହିଳା, ମିଶୁ, ବୃଦ୍ଧମାନଙ୍କ ଦାୟିତ୍ୱ ନିଜେ ନେବ । ଭଲ ମଣିଷ ବାଛି ତୁରନ୍ତ ସେବା ଦଳଟିଏ ଗଢ଼ିବ । ମୋ ଉପରେ ଦୃଷ୍ଟି ପଡିବାରୁ ପଚାରିଲେ, 'ଇନ୍ଦୁ, ପିଲାଟି କିଏ ?' ନାନୀ ପରିଚୟ ଦେବା ପୂର୍ବରୁ ଅଭୟ ହସ୍ତଟି ମଥା ସ୍ପର୍ଶ କରିସାରିଥିଲା । ସେଠାରୁ ଫେରି ନାନୀ ସିଧା ଗଲେ କାକଟପୁର । ମୋ ପାଇଁ ତାଙ୍କର ଉପଦେଶ

ଥିଲା, 'ମା' ରମାଦେବୀଙ୍କ ପୂର୍ବରୁ କେବେ ବି ମା' ସମ୍ବୋଧନ ଅଲଗା କରିବୁ ନାହିଁ ।' ଆଜି ଜାଣୁଛି, ସମସ୍ତ ତ୍ୟାଗ, ସମର୍ପିତ ଜନସେବା ପ୍ରତି ବଦଳରେ ସେ ଓଡ଼ିଆ ଜାତିଠାରୁ 'ମା' ସମ୍ବୋଧନ ପାଇଥିଲେ । ଏହା କ'ଣ କମ୍ ଗର୍ବଗୌରବର କଥା ।

ପ୍ରାତଃ ସ୍ମରଣୀୟା ମା' ରମାଦେବୀ ୧୮୯୯ ଡିସେମ୍ବର ୩ ତାରିଖ ଦିନ ଉତ୍କଳଗୌରବ ମଧୁସୂଦନଙ୍କ ଅନୁଜ ଗୋପାଳବଲ୍ଲଭଙ୍କ ସହଧର୍ମିଣୀ ବସନ୍ତ କୁମାରୀଙ୍କ କୋଳମଣ୍ଡନ କରିଥିଲେ । ପିତାମାତା ଶ୍ରଦ୍ଧାରେ ଡାକୁଥିଲେ ବେଲ ବୋଲି । ସମସ୍ତ ସଂସ୍କାର, ସୁଗୁଣ ଓ ଶିକ୍ଷା ସେ ପାଇଥିଲେ ପିତା ଗୋପାଳବଲ୍ଲଭ ଓ ମାତା ବସନ୍ତ କୁମାରୀଙ୍କଠାରୁ । ମା'ଙ୍କ ଶିକ୍ଷା ଥିଲା, 'ନାରୀର ଦୟା, କରୁଣା, ସେବା, ଲଜ୍ଜା ଭୂଷଣ ଅଟେ । ପରର ଉପକାର ଶ୍ରେଷ୍ଠ ଧର୍ମ ଅଟେ ।' ପିତା କିନ୍ତୁ ପୁରାଣ କଥା, ଇତିହାସ କଥା, ସ୍ୱଦେଶୀ ଜାଗରଣ କଥା କହି ଝିଅକୁ ମାର୍ଗଦର୍ଶନ ଦେଇଥିଲେ । ପିତା ଥିଲେ ଇଂରେଜ ଅମଳର ଡେପୁଟି କଲେକ୍ଟର । ବିହାରର ଗୟା, ମୁଜାଫରପୁର, ହଜାରିବାଗ ଭଳି ସମସ୍ୟା ବହୁଳ ଅଞ୍ଚଳରେ ସେ ପ୍ରଜାମାନଙ୍କ ନିକଟତର ହୋଇ ପାରିଥିଲେ । କୌଣସି ବିଦ୍ୟାଳୟକୁ ନଯାଇ ମା' ରମାଦେବୀ ଓଡ଼ିଆ, ସଂସ୍କୃତ, ହିନ୍ଦୀ, ବଙ୍ଗଳା ଭାଷାକୁ ଆୟତ୍ତ କରିଥିଲେ ।

୧୯୧୪ ମସିହା ପ୍ରଥମ ବିଶ୍ୱ ଯୁଦ୍ଧ ବିଭୀଷିକା ମଧ୍ୟରେ ପିତା ଗୋପାଳବଲ୍ଲଭ ନିଜର ଅଲିଅଳି କନ୍ୟାର ହାତକୁ ସର୍ବଗୁଣସମ୍ପନ୍ନ ଡେପୁଟି କଲେକ୍ଟର ଗୋପବନ୍ଧୁ ଚୌଧୁରୀଙ୍କୁ ଟେକି ଦେଇଥିଲେ । ଗୋପବନ୍ଧୁବାବୁ ଥିଲେ କଟକର ପ୍ରସିଦ୍ଧ ଓକିଲ ତଥା ନାମକରା ଜମିଦାର ଗୋକୁଳାନନ୍ଦ ଚୌଧୁରୀଙ୍କ ସୁଯୋଗ୍ୟ ପୁତ୍ର । ମଣିକାଞ୍ଚନ ସଂଯୋଗ ଭଳି ସ୍ୱାମୀ-ସ୍ତ୍ରୀ ସବୁ ଭୁଲି ଦେଶ ସେବାରେ ଜୀବନ ବିତାଇବାକୁ ସଂକଳ୍ପ କରିନେଲେ । ସେସମୟର ମର୍ଯ୍ୟାଦାସମ୍ପନ୍ନ ଡେପୁଟି କଲେକ୍ଟର ପଦବୀ ଛାଡି ଗୋପବନ୍ଧୁବାବୁ ସସ୍ତ୍ରୀକ ସ୍ୱଦେଶୀ ଆନ୍ଦୋଳନରେ ସାମିଲ ହୋଇଗଲେ । ପରେ ପରେ ତାଙ୍କ ଅନୁଜ ନବକୃଷ୍ଣ ଚୌଧୁରୀ, ଭ୍ରାତୃବଧୂ ମାଳତୀ ଚୌଧୁରୀ, ପୁତ୍ର ମନମୋହନ ଚୌଧୁରୀ, କନ୍ୟା ଅନ୍ନପୂର୍ଣ୍ଣା ଦେଶ ସେବାକୁ ଜୀବନର ବ୍ରତ ରୂପେ ଗ୍ରହଣ କରି ନେଇଥିଲେ ।

୧୯୨୧ ମାର୍ଚ୍ଚ ୨୪ ତାରିଖ ଦିନ ମହାତ୍ମା ଗାନ୍ଧୀ କଟକ କାଠଯୋଡି ବାଲି ଓ ବିନୋଦ ବିହାରୀ ପରିସରରେ ଦୁଇଗୋଟି ସାଧାରଣ ସମାବେଶରେ ଯୋଗଦେଇ ହରିଜନ, ଦଳିତମାନଙ୍କ ସୁରକ୍ଷା ଓ ସ୍ୱଦେଶୀ ଆନ୍ଦୋଳନର ଆବଶ୍ୟକତା ବୁଝାଇଥିଲେ । ଏହି ସମାବେଶରେ ସ୍ୱାମୀଙ୍କ ସହ ମା' ରମାଦେବୀ ଯୋଗଦେଇ ଜୀବନର ମାର୍ଗଦର୍ଶନ ପାଇଥିଲେ । ନିଜର ବହୁମୂଲ୍ୟ ୨୦୦ ଭରି ସ୍ୱର୍ଣ୍ଣ ଅଳଙ୍କାର ଓ ଅନେକ ମୂଲ୍ୟବାନ ଦ୍ରବ୍ୟ ଗାନ୍ଧୀଙ୍କ ସ୍ୱରାଜ ପାଣ୍ଠିକୁ ଦାନ କରିଥିଲେ । ଖଦୀବସ୍ତ୍ର ଆଜୀବନ ପରିଧାନ କରିବା ପାଇଁ ସଂକଳ୍ପ କରିଥିଲେ ।

୧୯୩୦ର ଆଇନ ଅମାନ୍ୟ ଆନ୍ଦୋଳନ, ଲବଣ ସତ୍ୟାଗ୍ରହ, ୧୯୩୪ ଅଗଷ୍ଟ ୮ ଗାନ୍ଧିଜୀଙ୍କ ଶ୍ରୀକ୍ଷେତ୍ର ହରିଜନ ସମାବେଶ ସହ ଶ୍ରୀମନ୍ଦିର ସମ୍ମୁଖରେ ଉତ୍କଳମଣିଙ୍କ ପ୍ରତିମୂର୍ତ୍ତି ଉନ୍ମୋଚନର ମୁଖ୍ୟ ଦାୟିତ୍ୱ ନେଇଥିଲେ ମା' ରମାଦେବୀ । ୧୯୨୫ ଅଗଷ୍ଟ ୧୯ ଓ ୨୦ ଦୁଇଦିନ ଧରି ମହାତ୍ମା ଗାନ୍ଧୀ ଉତ୍କଳଗୌରବ ମଧୁସୂଦନଙ୍କ କଟକ ବାସଭବନରେ ରହିବା ବେଳେ ତାଙ୍କଠାରୁ ସ୍ୱଦେଶ ଜାଗରଣ କାର୍ଯ୍ୟର ଅନେକ ଗୁରୁତ୍ୱପୂର୍ଣ୍ଣ ପରାମର୍ଶ ଗ୍ରହଣ କରିଥିଲେ । କଟକ ରହଣି ସମୟରେ ମଧୁସୂଦନଙ୍କ ସଞ୍ଚାଳିତ କୁଟୀର ଶିଳ୍ପ, ତାରକସୀ ଶିଳ୍ପ, ଚମଡା ଶିଳ୍ପ କେନ୍ଦ୍ରଗୁଡିକ ଦେଖି ଗାନ୍ଧିଜୀ ପ୍ରଭାବିତ ହୋଇ ଯାଇଥିଲେ । କଟକରେ କୁଷ୍ଠାଶ୍ରମ ପ୍ରତିଷ୍ଠା, ହରିଜନ ମଙ୍ଗଳ କାର୍ଯ୍ୟ ଗାନ୍ଧିଜୀ ଆରମ୍ଭ କରିଥିଲେ । ମା' ରମାଦେବୀ ଛାଇ ପରି ତାଙ୍କ ସଙ୍ଗେ ସଙ୍ଗେ ରହି ଗାନ୍ଧିଜୀଙ୍କ ହିନ୍ଦୀ ଭାଷଣର ଓଡ଼ିଆ ଅନୁବାଦ ସମସ୍ତଙ୍କୁ ଶୁଣାଉ ଥିଲେ । ବଡବାପା ମଧୁସୂଦନ ଓ ଗାନ୍ଧିଜୀଙ୍କ ଦ୍ୱାରା ଅନୁପ୍ରାଣିତ ହୋଇ ସେ ୱାର୍ଦ୍ଧା ଆଶ୍ରମ ଶୈଳୀରେ ଗଢିଥିଲେ 'ବରି ଆଶ୍ରମ' । ମା' ରମାଦେବୀଙ୍କ ଏତାଦୃଶ କାର୍ଯ୍ୟ ଇଂରେଜ ସରକାରଙ୍କୁ ବିଚଳିତ କରିଦେଲା । ୧୯୩୦ ନଭେମ୍ବର ୮ ତାରିଖରେ ତାଙ୍କୁ ବନ୍ଦୀ କରି ଆଠ ମାସ ପାଇଁ କଟକ ଜେଲରେ ରଖାଗଲା ।

୧୯୪୨ ଭାରତଛାଡ ଆନ୍ଦୋଳନରେ ପ୍ରତ୍ୟକ୍ଷ ସମ୍ପୃକ୍ତି ହେତୁ ଇଂରେଜ ସରକାର ମା' ରମାଦେବୀ ଓ ସ୍ୱାମୀ ଗୋପବନ୍ଧୁ ବାବୁଙ୍କୁ ଦୁଇ ବର୍ଷ ପାଇଁ ଜେଲ ଦଣ୍ଡ ଦେଲେ । ଦେଶ ସ୍ୱାଧୀନ ହେବା ପରେ ବହୁ ଜନନେତା ପଦପଦବୀ ପାଇଁ ବ୍ୟାକୁଳ ହୋଇ ଉଠିଲେ । ମାତ୍ର ଏହି ଦେଶ ସେବକ ଦମ୍ପତି ସେଥିରୁ ନିବୃତ୍ତ ରହି ଜନସେବାକୁ ଧର୍ମଭାବେ ମାନି ନେଇଥିଲେ । ୧୯୫୫ ମସିହା ବିନୋବାଜୀଙ୍କ ଭୂଦାନ ଯଜ୍ଞର ସଫଳତା ପଛରେ ମା' ରମାଦେବୀଙ୍କର ଅଭୟ ହସ୍ତ ଥିଲା । ସମସ୍ତ ପରିବାର ସଦସ୍ୟ ଏହି ମହାନ କାର୍ଯ୍ୟରେ ନିଜକୁ ସାମିଲ କରି ଏକ ଆଦର୍ଶ ସ୍ଥାପନ କରିଯାଇଛନ୍ତି ।

୧୯୫୮ ମସିହା ଏପ୍ରିଲ ୨୯ ସ୍ୱାମୀ ଗୋପବନ୍ଧୁଙ୍କ ସ୍ୱର୍ଗବାସ ମା' ରମାଦେବୀଙ୍କୁ ନିଃସଙ୍ଗ କରିଦେଲା । ତଥାପି ଧୈର୍ଯ୍ୟ ଧରି ନିଜର ସଂକଳ୍ପ ରକ୍ଷାରେ ଅଗ୍ରସର ହୋଇଥିଲେ । ୧୯୬୨ ଚୀନ୍ ଭାରତ ଯୁଦ୍ଧ ସମୟରେ ନିଜେ ସେବାଦଳ ଧରି ଦୁର୍ଦ୍ଦିନରେ ପଡିଥିବା ଭାରତୀୟ ଜବାନମାନଙ୍କୁ ସେବା ସହ ସାହସ ପ୍ରଦାନ କରିଥିଲେ । ଇନ୍ଦିରା ପ୍ରିୟଦର୍ଶିନୀଙ୍କ ପ୍ରଧାନମନ୍ତ୍ରିତ୍ୱ କାଳରେ ଜରୁରିକାଳୀନ ପରିସ୍ଥିତିର ଦୃଢ ମୁକାବିଲା କରିଥିଲେ ଜୟପ୍ରକାଶ ନାରାୟଣ । ମା' ରମାଦେବୀ ଭାରତୀୟ ଗଣତନ୍ତ୍ରର ମାନ ରକ୍ଷା ଲାଗି ଜୟପ୍ରକାଶଜୀଙ୍କୁ ପୂର୍ଣ୍ଣ ସମର୍ଥନ ଦେଇ ଭୁବନେଶ୍ୱରରେ ଏକ ବିଶାଳ ସମାବେଶ କରାଇଥିଲେ । ୧୪୪ଧାରା ଜାରି ସତ୍ତ୍ୱେ ସମାବେଶର ଅଗ୍ରଭାଗରେ ମା' ରମାଦେବୀଙ୍କୁ ଦେଖି ପ୍ରଶାସନ ପଛଘୁଞ୍ଚା ଦେଇଥିଲା । ବହୁ ଜନନାୟକ ଜେଲ୍ ଗଲେ, ମାତ୍ର ମା' ରମାଦେବୀଙ୍କୁ ଗିରଫ କରିବାକୁ କେହି ସାହସ କରି ନଥିଲେ ।

ଏହି ମହିୟସୀ ଦୃଢମନା ମହିଳା ମା' ରମାଦେବୀ ୧୯୮୫ ମସିହା ଜୁଲାଇ ୨୨ଦିନ ସବୁ ଜଞ୍ଜାଳ ତୁଟାଇ ସ୍ୱର୍ଗବାସୀ ସ୍ୱାମୀଙ୍କ ପାଖକୁ ଚାଲିଗଲେ । ତାଙ୍କ ମୃତ୍ୟୁରେ ଓଡ଼ିଶାର ମାନ୍ୟବର ରାଜ୍ୟପାଳ ବିଶ୍ୱମ୍ଭରନାଥ ପାଣ୍ଡେ କାନ୍ଦ କାନ୍ଦ ହୋଇ କହିଥିଲେ- 'ସେ ଓଡ଼ିଆ ଜାତିର ମା' ନଥିଲେ, ମୋର ମଧ୍ୟ ମା' ଥିଲେ ।' କୌଣସି ଉଚ୍ଚ ପଦବୀରେ ନଥାଇ ମଧ୍ୟ ତାଙ୍କ ପାଇଁ ରାଷ୍ଟ୍ରୀୟ ମର୍ଯ୍ୟାଦା ମିଳିଥିଲା । ରାଷ୍ଟ୍ରୀୟ ମର୍ଯ୍ୟାଦା ସହ ମୁଖାଗ୍ନି ଦେଇଥିଲେ ପୁତ୍ର ମନମୋହନ । ଇସାଇ ଜନକଥାରେ ଅଛି, ଅଗ୍ନି ଲୁହାକୁ ତରଳାଏ ମାତ୍ର ଜଳଦ୍ୱାରା ଲିଭିଯାଏ । ଜଳର ବାଦଲକୁ ପବନ ବୋହିନିଏ, ମାତ୍ର ମନୁଷ୍ୟ ଯୋଗ ଦ୍ୱାରା ପବନକୁ ଆୟତ୍ତ କରିଦିଏ । ନିଦ୍ରା-ମନୁଷ୍ୟକୁ ଅବଶ କରି ପକାଏ, ମାତ୍ର ମୃତ୍ୟୁ ନିକଟରେ ହାର୍‌ମାନେ । ଏହି ପ୍ରତାପଶାଳୀ ମୃତ୍ୟୁ କେବଳ କରୁଣା ପାଖରେ ନତମସ୍ତକ ହୋଇଥାଏ । ମା' ରମାଦେବୀ ଥିଲେ ଦୟା କରୁଣାର ପ୍ରତିମୂର୍ତ୍ତି । ତେଣୁ ସେ କାଳ କାଳ ମୃତ୍ୟୁର ଊର୍ଦ୍ଧ୍ୱରେ । ତାଙ୍କ ସ୍ମରଣରେ ଏକ ତଟରକ୍ଷୀ ଜାହାଜର ନାମ ମା' ରମାଦେବୀ ରଖାଯାଇଛି । ରାଜଧାନୀ ଭୁବନେଶ୍ୱରରେ ଏକ ଆଦର୍ଶ ମହିଳା କଲେଜ ସ୍ଥାପିତ ହୋଇଛି । ଉତ୍କଳ ବିଶ୍ୱବିଦ୍ୟାଳୟ ତାଙ୍କୁ ସମ୍ମାନ ସୂଚକ ଡକ୍ଟରେଟ୍ ଉପାଧି ଦେଇଛି । ସମର୍ପିତ ସେବା ଲାଗି ମିଳିଛି ସମ୍ମାନଜନକ 'ଯମୁନାଲାଲ ବାଜାଜ' ପୁରସ୍କାର । କିନ୍ତୁ ମା' ସବୁଥିରେ ନିର୍ଲିପ୍ତ । ଓଡ଼ିଆ ଜାତି ବଞ୍ଚିଥିବା ପର୍ଯ୍ୟନ୍ତ ଏହି ମହୀୟସୀ ମହିଳା ମା' ରମାଦେବୀଙ୍କ ଋଣରୁ ମୁକ୍ତ ହୋଇପାରିବ ନାହିଁ ।

ପ୍ରକୃତି ଭବନ, ପ୍ରାଚୀ ବିହାର
କାକଟପୁର, ପୁରୀ



# ଉତ୍କଳ ପ୍ରସଙ୍ଗର

## ସ୍ୱତ୍ୱ ତଥା ଅନ୍ୟାନ୍ୟ ସୂଚନା ସମ୍ପର୍କିତ ବିବରଣୀ

### ଫର୍ମ ନଂ - ୪

### (ନିୟମାବଳୀ - ୮)

| | | | |
|---|---|---|---|
| ୧. | ପ୍ରକାଶନର ସ୍ଥାନ | ... | ଭୁବନେଶ୍ୱର |
| ୨. | ପ୍ରକାଶନର ସମୟ କାଳ | ... | ମାସିକ |
| ୩. | ମୁଦ୍ରଣକାରୀଙ୍କ ନାମ | ... | ଶ୍ରୀ ଅଭୟ<br>ଓଡ଼ିଶା ସରକାରଙ୍କ ନିମନ୍ତେ ଓ ତରଫରୁ । |
| | ଜାତୀୟତା | ... | ଭାରତୀୟ |
| | ଠିକଣା | ... | ନିର୍ଦ୍ଦେଶକ, ଓଡ଼ିଶା ସରକାରୀ ମୁଦ୍ରଣାଳୟ, ମଧୁପାଟଣା,<br>କଟକ - ୭୫୩୦୧୦ । |
| ୪. | ପ୍ରକାଶକଙ୍କ ନାମ | ... | ଶ୍ରୀ ପ୍ରମୋଦ କୁମାର ଦାସ, ଓ.ପ୍ର.ସେ.<br>ନିର୍ଦ୍ଦେଶକ<br>ସୂଚନା ଓ ଲୋକ ସଂପର୍କ ବିଭାଗ, ଭୁବନେଶ୍ୱର-୭୫୧୦୦୧ |
| ୫. | ସଂପାଦକଙ୍କ ନାମ | ... | ଡକ୍ଟର ହୁସେନ ରବିଗାନ୍ଧୀ |
| | ଜାତୀୟତା | ... | ଭାରତୀୟ |
| | ଠିକଣା | ... | ସଂପାଦକ, ଉତ୍କଳ ପ୍ରସଙ୍ଗ<br>ସୂଚନା ଓ ଲୋକ ସଂପର୍କ ବିଭାଗ<br>ଓଡ଼ିଶା ସରକାର, ଭୁବନେଶ୍ୱର - ୭୫୧୦୦୧ |
| | ଯେଉଁ ବ୍ୟକ୍ତିବିଶେଷ ସମ୍ବାଦପତ୍ର ସ୍ୱତ୍ୱାଧିକାରୀ ହୋଇଥିବେ ଓ ଅଂଶୀଦାର ହୋଇଥିବେ କିମ୍ବା ସମୁଦାୟ ମୂଳଧନର ଏକ ଶତାଂଶରୁ ଅଧିକ ମୂଳଧନ ବିନିଯୋଗ କରିଥିବେ ସେମାନଙ୍କ ନାମ ଓ ଠିକଣା | ... | ଓଡ଼ିଶା ସରକାର, ଭୁବନେଶ୍ୱର |

ମୁଁ ଶ୍ରୀ ପ୍ରମୋଦ କୁମାର ଦାସ, ଓ.ପ୍ର.ସେ. ନିର୍ଦ୍ଦେଶକ, ସୂଚନା ଓ ଲୋକ ସଂପର୍କ ବିଭାଗ, ଭୁବନେଶ୍ୱର, ଏତଦ୍ୱାରା ଘୋଷଣା କରୁଅଛି ଯେ, ଉପର ଲିଖିତ ବିବରଣୀମାନ ମୋ ଜାଣିବାରେ ସତ୍ୟ ଅଟେ ।

ପ୍ରକାଶକଙ୍କ ସ୍ୱାକ୍ଷର ୨୨/୨/୧୪
ନିର୍ଦ୍ଦେଶକ
ସୂଚନା ଓ ଲୋକ ସଂପର୍କ ବିଭାଗ
ଭୁବନେଶ୍ୱର